Anil Kumar Panigrahi

# NP

# Dubbleyum

## PRESENTS

A NEW WORLD OF LOVE & ADVENTURE
FUN & FROLIC!

**Look for the LUCKY COUPON in**
NP
**Dubbleyum**
**Packet**




COLLECT

One latest comic book
for 12 lucky coupons
or
The latest edition of
Enid Blyton or
Mills & Boon novel
for 30 lucky
coupons




**DOUBLE COLOURS**
**DOUBLE FLAVOURS**
**DOUBLE SIZE AND**
**BIGGER BUBBLES**







**The National**
**Products**
BANGALORE-32

**NOTHING CAN BEAT A NP BURST OF FROLIC**

# Will you be the[r]e f[o]...



**Puri. The temple of Lord Jagannath. Garland around her neck and vermillion on her forehead, the 9-year-old bride of the Lord pledges her faith to Him amidst all the pomp and ceremony of a true Oriya wedding. No longer an ordinary girl, she is now the earthly consort of Puri Jagannath ...**

**The fascinating story of the dasis of Puri. Watch it come alive in the pages of the Heritage.**

**The Heritage: magazine or mini library?**

The Heritage is an amazing storehouse of information: every issue is a unique compilation of facts that answer some of the most intriguing questions.

How were black ants used in ancient surgery?

Why do the Charans of Rajasthan worship rats?

What light does Ramanujam's 'lost notebook' throw on Number Theory?

And more ...

Fascinating articles month after month, on every aspect of Indian culture. Stories about the land, its history, its people, their customs, their arts and crafts ...

Travelogues that capture the spirit of little known places and exotic lands.

From the publishers of Chandamama



THE HERITAGE



It's worth preserving. Every issue of it.










NEW
MALTOVA
The winning combination of health, strength and energy.
MALTOVA
The winning cup

# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

ନବବର୍ଷ ଉପଲକ୍ଷେ 'ଜହ୍ନମାମୁଁ' ତା'ର ଲକ୍ଷ ଲକ୍ଷ ପାଠକ ପାଠିକାଙ୍କୁ ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି । 'ଜହ୍ନମାମୁଁ' କାହାଣୀମାଳ ସହିତ ପରିବେଷଣ କରିଥାଏ ଭାରତ ତଥା ପୃଥିବୀ ସମ୍ପର୍କରେ ସାଧାରଣଜ୍ଞାନ ଏବଂ କିମ୍ବଦନ୍ତୀମାନ । ଏହା ପ୍ରତି ଆଦର ତେଣୁ ଏକ ଶୁଭ ସୂଚନା ।

## ଅମରବାଣୀ

ଚୌରେ ଦେବାଲୟେ ସ୍ୱର୍ଣ୍ଣ ମନ୍ୱେଷ୍ୟତି, ନ ଦୈବତମ୍ ।
ଗୃହେ ପ୍ରବିଷ୍ଟଃ ଶୁନକଃ, ଭାଣ୍ଡାନୁବେଷି ଭବେତ୍ ଖଳୁ ॥
[ଘରେ ପଶି କୁକୁର ଯେମିତି ଖାଦ୍ୟ ଦ୍ରବ୍ୟର ଅନ୍ୱେଷଣ କରେ, ଚୋର ସେମିତି ଦେଅଁଙ୍କ ଅଳଙ୍କାର ଲୋଭରେ ମନ୍ଦିର ଭିତରେ ପଶେ, ଦେଅଁଙ୍କ ପ୍ରତି ଭକ୍ତି ଯୋଗୁଁ ନୁହେଁ ।]

ବର୍ଷ : ୧୯ ଜାନୁଆରି ୧୯୮୭ ଅଙ୍କ : ୭
ପ୍ରତିସଂଖ୍ୟା : ଟ. ୨·୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦



ଫୁଟବଲ୍ ହେଉଛି ମୋର ଅତି ପ୍ରିୟ ଖେଳ । ଖେଳ ପଡ଼ିଆରେ ପ୍ରତିଦ୍ୱନ୍ଦ୍ୱୀ ଖେଳାଳୀ ଠାରୁ ବଲ୍ ଛଡ଼େଇନେଇ ଗୋଟାକ ପରେ ଗୋଟାଏ ଗୋଲ ଦେଲାବେଳେ ଦର୍ଶକମାନ ତାଳିମାଡ଼ରେ ମୋଛାତି ଫୁଲି ଉଠେ । ବାଃ... କିମଜା !

ବାପା କହନ୍ତି ଆହୁରି ଭଲ ଖେଳିବା ଲାଗି, ଭଲ ସ୍ୱାସ୍ଥ୍ୟ ଦରକ

ସେଇଥିପାଇଁତ ମୁଁ ଦିନକୁ ଦୁଇଥର ହର୍ଲିକ୍ସ ପିଉଛି ।



## ଜହ୍ନମାମୁଁ ସମ୍ବାଦ-ଚିତ୍ରା



### ଇଂରାଜୀ ସମଝଦାର୍ ଚିମ୍ପାଞ୍ଜି

ଆଟଲଣ୍ଟାର ଗୋଟିଏ ଚିଡ଼ିଆଖାନାରେ ଥିବା ପ୍ରାୟ ପାଞ୍ଚବର୍ଷ ବୟସ୍କ ଚିମ୍ପାଞ୍ଜିଟିଏ କେତେ ଗୁଡ଼ିଏ ଇଂରାଜୀ ପ୍ରଶ୍ନ ବେଶ୍ ବୁଝି ପାରୁଛି । ସେସବୁର ଉତ୍ତର ସିଏ କଥା କହି ଦେଇ ପାରୁ ନାହିଁ ସିନା, ହେଲେ ସଙ୍କେତ ଦ୍ୱାରା ଦେଇ ପାରୁଛି ।

### ବୃହତ୍ତମ ନକ୍ଷତ୍ର ମଣ୍ଡଳ

ଆମେରିକାର ଆରିଜୋନା ଅବ୍‌ଜର୍‌ଭେଟରିରେ ଗବେଷଣା କରୁଥିବା ଜାକ୍ ବର୍ଣ୍ଣସ୍ ନାମକ ବୈଜ୍ଞାନିକ ଓ ତାଙ୍କ ସହକର୍ମୀମାନେ ଏକ ବିଲିଅନ୍ ଆଲୋକବର୍ଷ ଦୂରରେ ଥିବା ଯେଉଁ ନକ୍ଷତ୍ର ମଣ୍ଡଳର ସନ୍ଧାନ ପାଇଛନ୍ତି, ତାହାହିଁ ଏ ଯାବତ୍ ଆବିଷ୍କୃତ ବୃହତ୍ତମ ନକ୍ଷତ୍ର ମଣ୍ଡଳ ।





### କଥା କୁହା ଟଙ୍କା

କାନାଡାରେ ଏପରି ଏକ ଯନ୍ତ୍ର ନିରୂପିତ ହୋଇ ପାରିଛି, ଯାହା ଦ୍ୱାରା ଜଣେ ଅନ୍ଧ ତା' ହାତରେ ଥିବା ନୋଟ୍ ବା ଚେକ୍‌ର ମୂଲ୍ୟ ଜାଣି ପାରିବ । ନୋଟ୍ ବା ଚେକ୍ ନିଜେ କହିଦେବ ତା'ର ମୂଲ୍ୟ !

## ଜାଣନ୍ତି କି ?

୧. ଏ ଯାବତ୍ ପ୍ରକାଶିତ ଓଡ଼ିଆ ଭାଷାର ବୃହତ୍ତମ ଅଭିଧାନ କ'ଣ ?

୨. ଇଂରାଜୀ ଭାଷାରେ ବୃହତ୍ତମ ମହାକାବ୍ୟର ନାମ କ'ଣ ଓ କବି କିଏ ?

୩. ଭାରତୀୟ ନୃତ୍ୟ ଓ ସଙ୍ଗୀତକୁ ବିଦେଶରେ ପରିଚିତ କରାଇବାରେ ବିଶେଷ ଭୂମିକା ଯଥାକ୍ରମେ କିଏ କିଏ ତୁଲାଇଛନ୍ତି ?

୪. ସେମାନେ ପରସ୍ପର ସମ୍ପର୍କିତ କି ?

୫. ସାହ୍‌ନାଇ ବାଦନରେ ସବୁଠାରୁ ପ୍ରସିଦ୍ଧି ଲାଭ କିଏ କରିଛନ୍ତି ?

(୭୫ ପୃଷ୍ଠାରେ ଉତ୍ତର ଦେଖନ୍ତୁ)

ପ୍ରାଚୀନ ସାହିତ୍ୟର ଚରିତ :

# ରାଜା ଇନ୍ଦ୍ରଦ୍ୟୁମ୍ନ

ଇନ୍ଦ୍ରଦ୍ୟୁମ୍ନ ସ୍ୱର୍ଗରେ ଥା'ନ୍ତି । ଥରେ କେତେଜଣ ଦେବତା ତାଙ୍କୁ କହିଲେ, "ଆପଣ ଦିନେ ମର୍ତ୍ତ୍ୟଲୋକରେ ବିପୁଳ ଯଶ ଅର୍ଜନ କରିଥିଲେ । ଅନେକ ପୁଣ୍ୟ କରିଥିଲେ ବୋଲି ତାହା ସମ୍ଭବ ହୋଇଥିଲା । କିନ୍ତୁ ଆଜି ମର୍ତ୍ତ୍ୟଲୋକର ମଣିଷମାନେ ଆପଣଙ୍କୁ ଆଉ ମନେ ରଖି ନାହାନ୍ତି !"

ଇନ୍ଦ୍ରଦ୍ୟୁମ୍ନଙ୍କର କୌତୂହଳ ହେଲା । ସେ ମର୍ତ୍ତ୍ୟଲୋକକୁ ଆସି ବୟୋବୃଦ୍ଧ ମାର୍କଣ୍ଡେୟ ମୁନିଙ୍କୁ ପଚାରିଲେ, "ମୁନିବର ! ଆପଣ ମୋତେ ଚିହ୍ନି ପାରୁଛନ୍ତି ?"

"ନା । ଆପଣ କେବେ ଏ ପୃଥିବୀରେ ଥିଲେ ମୁଁ ଜାଣେନା । ମୋଠୁଁ ବୟୋବୃଦ୍ଧ ପ୍ରାବାକର୍ଣ୍ଣ ନାମକ ପେଚକ ଜାଣିଲେ ଜାଣିଥିବେ ।" ଏହା କହି ମାର୍କଣ୍ଡେୟ ଇନ୍ଦ୍ରଦ୍ୟୁମ୍ନଙ୍କୁ ସେ ପେଚକ ପାଖକୁ ନେଇଗଲେ । ପେଚକ କିନ୍ତୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ଚିହ୍ନି ପାରିଲେ ନାହିଁ । ସେ କହିଲେ କି ନାଡିଜଙ୍ଘ ନାମକ ବକ ତାଙ୍କଠାରୁ ବୟସ୍କ । ସେ ଇନ୍ଦ୍ରଦ୍ୟୁମ୍ନ, ମାର୍କଣ୍ଡେୟ ଏବଂ ପେଚକଙ୍କୁ ବକଙ୍କ ପାଖକୁ ବାଟ କଢ଼ାଇ ନେଇଗଲେ ।

ବକ କହିଲେ, "ନା । ମୁଁ ଆପଣଙ୍କ ବିଷୟରେ କିଛି ଜାଣେ ନାହିଁ । ତେବେ ମୋଠାରୁ ବୟସ୍କ ହେଲେ ଅକୂପାର ନାମକ କଚ୍ଛପ । ସେ ହୁଏତ ଆପଣଙ୍କୁ ଚିହ୍ନିବେ ।"

ଇନ୍ଦ୍ରଦ୍ୟୁମ୍ନଙ୍କୁ ଦେଖି ଓ ତାଙ୍କ ପ୍ରଶ୍ନ ଶୁଣି କଚ୍ଛପ କହିଲେ, "ମହାରାଜ ! ଆପଣଙ୍କୁ ମୁଁ କେବେ ଭୁଲିପାରେଁ ? ଏଇ ଯେଉଁ ହ୍ରଦ, ଏହାର ନାମ ଇନ୍ଦ୍ରଦ୍ୟୁମ୍ନ ହ୍ରଦ । ଦିନେ ଆପଣ ଦାନ ଦେବା ନିମନ୍ତେ ଅସଂଖ୍ୟ ଗାଭିଙ୍କୁ ଏଠାରେ ଏକତ୍ର କରିଥିଲେ । ସେହିମାନଙ୍କ ଖୋଜ ମାଡ଼ରେ ଏଠାରେ ଯେଉଁ ଗଭୀର ସ୍ଥାନଟିଏ ସୃଷ୍ଟି ହୋଇଥିଲା, ତାହାର ପରିଣତି ଏ ହ୍ରଦ ।"

ସେତିକିବେଳେ ଇନ୍ଦ୍ରଲୋକରୁ ରଥ ଆସି ପହଞ୍ଚିଲା । ଦେବଦୂତମାନେ ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ, "ମହାରାଜ ! ଆପଣଙ୍କ ଯଶ ମହାକାଳ ଗର୍ଭରେ ଅମ୍ଲାନ ହୋଇ ରହିଛି । ଆପଣ ଇନ୍ଦ୍ରଲୋକକୁ ଚାଲନ୍ତୁ ।" ଇନ୍ଦ୍ରଦ୍ୟୁମ୍ନ ଇନ୍ଦ୍ରଲୋକକୁ ପ୍ରତ୍ୟାବର୍ତ୍ତନ କଲେ ।





# ଅଜ୍ଞାତ ଚୋର

ପ୍ରିୟନାଥ ଓ ସୁପ୍ରିୟା ଥିଲେ ସ୍ୱାମୀ ସ୍ତ୍ରୀ । ସେମାନଙ୍କ ନାମରେ ଯେପରି ସାମଞ୍ଜସ୍ୟ ଥିଲା, ସ୍ୱଭାବରେ ବି ସେହିପରି ଥିଲା । ସେମାନଙ୍କ ସ୍ୱଭାବର ଯାହା ବିଶେଷତ୍ୱ, ତାହା ବିବାହ ପରେ ପରେ ଉଭୟଙ୍କ ପାଖରେ ସ୍ପଷ୍ଟ ହୋଇ ଯାଇଥିଲା ।

ତାହା ଘଟିଥିଲା ଏହି ପ୍ରକାରେ; ସେଦିନ ପ୍ରିୟନାଥ ଓ ସୁପ୍ରିୟା ସେମାନଙ୍କର ଜଣେ ବନ୍ଧୁବାନ୍ଧବଙ୍କ ଘରେ ବାହାଘର ଯୋଗୁଁ ଉପହାର ରୂପେ ପଠାଇବା ନିମନ୍ତେ ଖଣ୍ଡିଏ ଶାଢ଼ୀ କିଣିବା ଦରକାର ହେଲା । ଦୁହେଁ ଦୋକାନକୁ ଗଲେ । ସୁପ୍ରିୟା ଶାଢ଼ୀ ପସନ୍ଦ କଲା । ସୁପ୍ରିୟା ଅନ୍ୟ କିଛି ଲୁଗାପଟା ଦେଖିବା ବେଳେ ପ୍ରିୟନାଥ ସେ ଶାଢ଼ୀ ଖଣ୍ଡିକ ଲୁଚାଇ ବାହାରକୁ ନେଇ ଆସିଲା । ସେ ଭାବିଥିଲା ସୁପ୍ରିୟା ସେକଥା ଲକ୍ଷ୍ୟ କରି ନାହିଁ; ପ୍ରିୟନାଥ ମୂଲ୍ୟ ଦେଇ ଶାଢ଼ୀ ଆଣିଛି ବୋଲି ସେ ଧରିନେଇଥିବ । କିନ୍ତୁ ଦୁହେଁ ବାହାରକୁ ଆସିବା ପରେ ସୁପ୍ରିୟା ଆନନ୍ଦରେ ହାତତାଳି ଦେଇ ତା' ସ୍ୱାମୀର କୌଶଳକୁ ତାରିଫ୍ କଲା । ଯେତେବେଳେ ପ୍ରିୟନାଥ ବୁଝିଲା ଯେ ସୁପ୍ରିୟା ତା' ଚୋରି ବିଦ୍ୟାକୁ ପସନ୍ଦ କରିଛି, ସେତେବେଳେ ସେ ଖୁସି ହୋଇଗଲା । ତେଣିକି ଦୁହେଁ ସଲସୁତୁରା କରି ଚୋରି କରିବାକୁ ଲାଗିଲେ ।

ସେମାନେ ସାଧାରଣତଃ ଏହିପରି କୌଶଳ ଅବଲମ୍ବନ କରୁଥିଲେ : କୌଣସି ନୂଆ ସହର ବା ବଜାରକୁ ଯାଇ ଘରଟିଏ ଭଡ଼ା ନେଇ ସେମାନେ ରହୁଥିଲେ । ସୁପ୍ରିୟା ପାଖ ପଡ଼ୋଶୀଙ୍କ ଘରର ସ୍ତ୍ରୀଲୋକଙ୍କ ସହ ଘନିଷ୍ଠ ଭାବରେ ମିଳାମିଶା କରି ସେମାନଙ୍କ ଘରେ ମୂଲ୍ୟବାନ ଜିନିଷ ବା ଟଙ୍କା କଉଡ଼ି କେଉଁଠାରେ



ଅଛି ପ୍ରଥମେ ଠାବ କରୁଥିଲା । ତା'ପରେ ସୁଯୋଗ ଦେଖି ସେ ସେସବୁ ନିଜ ଘରକୁ ସ୍ଥାନାନ୍ତର କରୁଥିଲା । ଦୁଇ ତିନିଦିନ ଅନ୍ତରରେ ପ୍ରିୟନାଥ ସେସବୁ ନେଇ ଯାଇ ଜଣେ ବେପାରୀକୁ ଦେଇ ଟଙ୍କା ଆଣୁଥିଲା । ସେ ବେପାରୀ ଚୋରମାନଙ୍କଠାରୁ ଜିନିଷ କିଣୁଥାଏ ।

ଯେତେବେଳେ ଦୁହେଁ ବୁଝୁଥିଲେ କି ସେମାନଙ୍କ ଉପରେ ଲୋକଙ୍କର ସନ୍ଦେହ ହେଲାଣି, ସେତେବେଳେ କାହାକୁ କିଛି ନ ଜଣାଇ ଚୁପ୍‌ଚାପ୍ ବସାଘର ଛାଡ଼ି ଅନ୍ୟତ୍ର ଚାଲି ଯାଉଥିଲେ ।

ବେପାର ବେଶ୍ ଭଲ ଚାଲିଥିଲା । ଗୋଟିଏ ସ୍ଥାନରେ ଦୁଇ ଚାରିଥର ଚୋରି କରିବା ପରେ ପ୍ରଥମେ ସେ ସ୍ଥାନ ଛାଡ଼ି ଅନ୍ୟତ୍ର ଯାଉଥିଲେ । କିନ୍ତୁ ସେହି ସହରରେ ଦୁଇଚାରି ସ୍ଥାନ ବଦଳାଇବା ପରେ ସହର ଛାଡ଼ି ମଧ୍ୟ ଅନ୍ୟ ସହରକୁ ଯାଉଥିଲେ ।

ଥରେ ଦୁହେଁ ଯାଇ ଶ୍ରୀରାମପୁରରେ ଭଡ଼ା ଘରଟିଏ ନେଇ ଆସ୍ଥାନ ଜମାଇଲେ । ଯଥାରୀତି କାମ ଚାଲିଲା । ବରଂ ସେଠାରେ ବେଶି ଆୟ ହେଲା । ଦିନେ ଖରାବେଳେ ସୁପ୍ରିୟା ସ୍ତ୍ରୀଲୋକମାନଙ୍କ ବୈଠକରେ କହିଲା, "ଛିଃ, ଆମେ ତ ଏଠି ନୂଆ । ଆପଣମାନଙ୍କର ଏ ଅଞ୍ଚଳରେ ଏତେ ଚୋରି ହୁଏ ବୋଲି ଜାଣିଥିଲେ ଆମେ କଦାପି ଏଠାକୁ ଆସି ନଥାନ୍ତୁ । ବର୍ତ୍ତମାନ ଆପଣମାନଙ୍କ ପ୍ରତି ମୋର ଏତେ ସ୍ନେହ ଶ୍ରଦ୍ଧା ଆସି ଯାଇଛି ଯେ ଆଜି ଏଠାରୁ ଯିବାକୁ ଇଚ୍ଛା ହେଉ ନାହିଁ ।"

ସୁପ୍ରିୟାର ଅଭିଯୋଗରେ ସ୍ତ୍ରୀଲୋକମାନେ ବାସ୍ତବିକ ଲଜ୍ଜା ଅନୁଭବ କଲେ । ସେମାନଙ୍କ ଘରୁ ଯେମିତି ଜିନିଷପତ୍ର ଚୋରି ହେଉଛି, ସୁପ୍ରିୟା ଘରୁ ବି ସେମିତି ଚୋରି ହେଉଛି ବୋଲି ସେମାନେ ଧରିନେଲେ । ସେମାନେ କହିଲେ, "ଭଉଣୀ! ବିଶ୍ୱାସ କର, ଆଗେ ଏପରି ହେଉ ନଥିଲା । ଏଇ କେଇଦିନ ହେଲା ଏପରି ହେଉଛି । ଆମେ ବଡ଼ ଦୁଃଖିତ ।"

ସେଦିନ ସୁପ୍ରିୟା ଘରକୁ ଆସି ବାହାଦୁରି କରି ପ୍ରିୟନାଥକୁ କହିଲା, "ତମେ ତ ଖାଲି ଜିନିଷ ରପ୍ତାନି କରୁଛ । କିନ୍ତୁ ଆମଦାନି

କରୁଛି କିଏ ? ମୁଁ । ସେଥିରେ ପୁଣି ସମସ୍ତଙ୍କ ବିଶ୍ୱାସ ମୋ ଉପରେ ଅଟୁଟ ରଖି ପାରୁଛି । ତମେ ଆଜି ଗୋଟାଏ ଚିଜ ଆମଦାନି କଲ, ଦେଖିବା !"

"କେଉଁ ଚିଜ ?" ପ୍ରିୟନାଥ ହସି ପଚାରିଲା ।

ଆମ ବସା ପୂର୍ବକୁ ରଘୁବାବୁଙ୍କ ବଗିଚା । ଗୋଟାଏ ପ୍ରକାଣ୍ଡ ପାଟକପୁରା କଦଳୀ କାନ୍ଧି ପଡ଼ିଛି । ଶୀଘ୍ର ପାଚିବ । ଏଇଟା ଆମେ ଖାଇବା । ଆଜି କାଟି ଆଣି ପାରିବ ?"

"ମଲା ! ଏଇ କଥା !"

ପ୍ରିୟନାଥ ରାତିରେ କଦଳୀ କାନ୍ଧି କାଟି ଆଣିଲା । ପାଚିବା ଏପଟେ ରହୁ ସୁପ୍ରିୟା ତାହା ଧରି ଆଣିଲା । ଘର ଭିତରେ ଗୋଟିଏ ଖଟ ଉପରେ ସେମାନେ ତାହା ଲଗାଇ ରଖି ଶୋଇ ପଡ଼ିଲେ । ଉଭୟଙ୍କର ନିଦ ଖୁବ୍ ଗାଢ଼ ହୋଇଥାଏ ।

ସକାଳେ ପ୍ରିୟନାଥ ପାଟି ଶୁଣି ସୁପ୍ରିୟା ଉଠି ପଡ଼ିଲା । ଘର କବାଟ ସବୁ ମେଲା ପଡ଼ିଥିଲା । ଜିନିଷ ପତ୍ର ଏଣେ ତେଣେ ଖେଳେଇ ହୋଇ ରହିଥିଲା । ପ୍ରିୟନାଥ ଦୌଡ଼ିଯାଇ ସିନ୍ଦୁକ ଖୋଲା ରହିଥିବାର ଦେଖି ଭିତରେ କିଛି ଖୋଜିଲା ଏବଂ ଚିତ୍କାର କରି କହିଲା, "ପାଞ୍ଚ ହଜାର ଟଙ୍କା ରଖିଥିଲି । ସବୁ ଯାଇଛି !"

"ଆମ ଘରୁ ଚୋରି !" ସୁପ୍ରିୟା ପାଟି କରି କାନ୍ଦି ଉଠିଲା । ପାଖ ପଡ଼ୋଶୀ ଦୌଡ଼ି ଆସିଲେ ।



"ଆରେ, ଆରେ ! ଆମ କଦଳୀ କାନ୍ଧ କ'ଣ ଏଠି !" ରଘୁବାବୁଙ୍କ ସ୍ତ୍ରୀ ପାର୍ବତୀ ଆଶ୍ଚର୍ଯ୍ୟ ହୋଇ କହିଲେ । କଦଳୀ କାନ୍ଧଟି ଘରୁ କାଢ଼ି ଚୋର କାହିଁକି ତଳେ ଥୋଇ ଦେଇଥିଲା, ସେକଥା ପ୍ରିୟନାଥ ବା ସୁପ୍ରିୟା ବୁଝି ପାରିଲେ ନାହିଁ । ପାର୍ବତୀ ଆଗେଇ ଯାଇ କଦଳୀ କାନ୍ଧ ଦେହରେ ଗୁଡ଼ା ହୋଇଥିବା ଖଣ୍ଡିଏ କାଗଜ ବାହାର କରି ଆଣି ପଢ଼ିଲେ :

"ମୁଁ 'ଚୋର' ଲେଖୁଛି । ମୁଁ ଆଜଯାଏ ଚୋରି କରି ନଥିଲି । ମୁଁ ଜଣେ ଗରିବ ଯୁବକ । କାଲି ରାତିରେ ବାହାରେ ଯିବା ବେଳେ ଦେଖିଲି ତମେ ପଡ଼ୋଶୀ ଘରୁ କଦଳୀ କାନ୍ଧ ଚୋରି କରୁଛ । ତମ ଘର ଖୋଲା ଥିଲା । ମୁଁ ସେତିକିବେଳେ ଘରେ ପଶିଗଲି ଓ ତମ ଶେଯ ତଳୁ ଚାବି ବାହାର କରିନେଇ ଆଗେ ସିନ୍ଦୁକ ଖୋଲି ଟଙ୍କା କାଢ଼ି ନେଲି । ଚାଲିଯିବାକୁ ବାହାରୁଛି, ତମେମାନେ ଆସିଗଲ । ତେଣୁ ମୁଁ କୋଣରେ ଅନ୍ଧାରରେ ବସି ରହିଲି । ତମମାନଙ୍କ କଥାବାର୍ତ୍ତାରୁ ବୁଝିଲି ତମେମାନେ ପ୍ରବୀଣ ଚୋର । ତମେମାନେ ଶୋଇ ପଡ଼ିବା ପରେ ଏ ଚିଠି ବାରଣ୍ଡାରେ ଜହ୍ନ ଆଲୁଅରେ ବସି ଲେଖିଲି ଓ ଯାହା ଯେତିକି ପାଇଲି ନେଇଗଲି । ଏସବୁ ତ ତମର ନୁହେଁ ! ତେଣୁ ମନ ଖରାପ କରିବ ନାହିଁ ।"

ପାର୍ବତୀ ଚିଠିଟି ପାଠ କରି ପଢ଼ିବା ବେଳକୁ ଆଉ କେହି କେହି ସେମାନଙ୍କ ଘରୁ ଚୋରି ଯାଇଥିବା ଜିନିଷ ସେଠି ପାଇଗଲେ ।

ସୁପ୍ରିୟା ଓ ପ୍ରିୟନାଥ କଥା ନକହି ଠିଆ ହୋଇଥାନ୍ତି ।

ସେ ସାହିର ଲୋକେ ଅତ୍ୟନ୍ତ ଭଦ୍ର ଥିଲେ । ସେମାନେ ସେ ଦୁହିଙ୍କୁ କିଛି ଦଣ୍ଡ ଦେଲେ ନାହିଁ । "ଯାଉ । ଯାଅ, ପଳାଅ !" କହିଲେ । ସେମାନେ କିଛିଦିନ ପରେ ସେ ଦୁହିଙ୍କୁ ଭୁଲିଗଲେ । ସେ ଦୁହେଁ କିନ୍ତୁ ଆଜୀବନ ସେ ଅଜ୍ଞାତ ଚୋରକୁ ଭୁଲି ପାରିଲେ ନାହିଁ ।



# ଦାନପ୍ରିୟ ରାଜା

ପୂର୍ବକାଳରେ ଜଣେ ରାଜା ଥିଲେ । ଯିଏ ଗୋଟାଏ କିଛି ଭଲ କଥା କହିଦେଲା କି ରାଜାଙ୍କ ପ୍ରତି ସୌଜନ୍ୟ ଦେଖାଇଲା ତ ତାକୁ ପୁରସ୍କାର !

ଦିନେ ରାଜା ରାଜଧାନୀଠାରୁ କିଛି ଦୂରରେ ଥିବା ତାଙ୍କର ଗୋଟିଏ ଉଦ୍ୟାନକୁ ବୁଲି ଯାଇଥାନ୍ତି । ତାଙ୍କ ଆଖିରେ ପଡ଼ିଲା ଗୋଟାଏ ନୂଆ ପକ୍ଷୀ । ସେ ତାକୁ ଧରି ଆଣିଲେ । ପକ୍ଷୀର ନାମ ପଚାରିବାରୁ କେହି କହି ପାରିଲେ ନାହିଁ । ଜଣେ ସେବକ କହିଲା, "ଏ ପକ୍ଷୀ ନୂଆ । ସେ ନିଜେ ସିନା ନିଜ ନାମ କହିବ !"

ରାଜା ଏ ଉତ୍ତରରେ ଖୁସି ହୋଇ ସଙ୍ଗେ ସଙ୍ଗେ ନିଜ ବାମ ହାତରୁ କଙ୍କଣଟି ଖୋଲି ସେବକକୁ ଦେଇଦେଲେ । ତା'ପରେ ସେ ପକ୍ଷୀକୁ ପଚାରିଲେ, "ତୋ ନାମ କ'ଣ ?"

ପକ୍ଷୀ କିଛି କହିଲା ନାହିଁ । ସେତିକିବେଳେ ଅନ୍ୟ ଜଣେ ସେବକ କହିଲା, "ମହାରାଜ ! ଏ ପକ୍ଷୀଟି ସମ୍ଭବତଃ ବୋକା । ନହେଲେ କି ଚୁପ୍ ରହନ୍ତା ?"

ସଙ୍ଗେ ସଙ୍ଗେ ରାଜା ନିଜ ଦକ୍ଷିଣ ହସ୍ତର କଙ୍କଣଟି ସେ ସେବକଙ୍କୁ ଦେଇ ପକାଇଲେ ।

ମନ୍ତ୍ରୀ ଦେଖିଲେ, ପକ୍ଷୀ ବିଷୟରେ ନାନା କଥା କହି ସେବକମାନେ ରାଜାଙ୍କ ସବୁ ଆଭରଣ ଲୁଟି ନେବେ । ସେ ଜଣେ ସେବକକୁ ଇଶାରା କରିଦେଲେ । ସେ ସେବକ କୌଶଳରେ ପକ୍ଷୀଟିକୁ ଉଡ଼ାଇ ଦେଲା । ସେଥିରେ ରାଜାଙ୍କ ମୁହଁ ଫିକା ପଡ଼ିଯିବାର ଦେଖି ମନ୍ତ୍ରୀ କହିଲେ, "ମହାରାଜ ! ଯେଉଁ ପକ୍ଷୀର ନାମ ଆମେ ଜାଣୁ ନା କି ସେ ନିଜେ ବି ଜାଣେ ନା, ସେ ପକ୍ଷୀରେ ଆମର କ'ଣ ପ୍ରୟୋଜନ ?"

"କଥାଟାଏ କହିଲ ଏକା !" ଏହା କହି ରାଜା ନିଜ ହାରଟି ବାହାର କରି ମନ୍ତ୍ରୀଙ୍କୁ ଦେଇଦେଲେ ।





# କିଏ ମହାନ୍ ?

କୁନ୍ତଳ ରାଜ୍ୟର ରାଜା ଜଗଦେବଙ୍କ ଦରବାରରେ ଥିଲେ ଜଣେ ବରିଷ୍ଠ କବି । ନାମ ଲଳିତ ମିଶ୍ର । ରାଜା ତାଙ୍କୁ ବହୁତ ସମ୍ମାନ କରୁଥିଲେ । କଥାରେ କଥାରେ ତାଙ୍କ କବିତାରୁ ଉଦ୍ଧୃତ ଦେଉଥିଲେ ।

ଲଳିତ ମିଶ୍ର ଯେ ବାସ୍ତବିକ ଜଣେ ପ୍ରତିଭାଧର କବିଥିଲେ, ଏଥିରେ କାହାରି ସନ୍ଦେହ ନଥିଲା । ରାଜ୍ୟର ଅନ୍ୟ ଗୁଣୀ କବିମାନେ ତାଙ୍କୁ ସେମାନଙ୍କ ଆଦର୍ଶ ରୂପେ ଦେଖୁଥିଲେ ।

ଥରେ ରାଜା ଘୋଷଣା କଲେ କି ତେଣିକି ସେ ପ୍ରତିବର୍ଷ ତାଙ୍କ ରାଜ୍ୟର ଜଣେ ଜଣେ କବିଙ୍କୁ ସମ୍ମାନିତ କରିବେ । ପ୍ରଥମ ସମ୍ମାନ କାହାକୁ ମିଳିବ, ସେ ବିଷୟରେ କାହାରି ମନରେ ସନ୍ଦେହ ନ ଥିଲା । ସମସ୍ତେ ଧରିନେଇଥିଲେ ଯେ ତାହା କବି ଲଳିତ ମିଶ୍ରଙ୍କୁ ମିଳିବ ।

ଦିନେ ରାତିରେ କବି ଲଳିତ ମିଶ୍ରଙ୍କ ଘରେ ଆଉ ଗୁରିଜଣ କବି ଖିଆପିଆ କରୁଥିଲେ । ଜଣେ କବି ଖୁବ୍ ଆଗ୍ରହରେ ଅନ୍ୟମାନଙ୍କୁ କହିଲେ, "ଶୁଣିଲେଣି ? ଏ ବର୍ଷର ରାଜ-ସମ୍ମାନ ଲୁଆଡ଼େ ସୁମନ୍ତ୍ରପୁର ଗ୍ରାମର କବି ଶ୍ରୀପତି ପାଉଛନ୍ତି !"

"ସୁମନ୍ତ୍ରପୁରର ଶ୍ରୀପତି ? ହଁ, ମୁଁ ତାଙ୍କର କିଛି କିଛି କବିତା ପଢ଼ିଛି । ଭଲ କବି । କିନ୍ତୁ ରାଜ-ସମ୍ମାନ ହଠାତ୍ ସେ ପାଇବେ କିପରି ? ତାଙ୍କୁ ଜାଣେ ବା କିଏ ? ନା, ନା, ଏହା ଭୁଲ ଖବର ।" ଜଣେ ମନ୍ତବ୍ୟ ଦେଲେ ।

ଅନ୍ୟ ଜଣେ କହିଲେ, "ଅସମ୍ଭବ ! ଲଳିତ ମିଶ୍ର ଥାଉଁ ଥାଉଁ ଆଉ କେହି ସେ ସମ୍ମାନ ପାଇ ପାରେନା କି ପାଇବାର କଥା ନୁହେଁ ।"

ସମରେନ୍ଦ୍ର

ପୁରସ୍କାର ପ୍ରତି ତାଙ୍କ ଲୋଭ ମାତ୍ରାଧିକ ବୋଲି ବୁଝୁଛି । ହେଉ, ତାଙ୍କୁ ପଦେ ଶୁଣାଇ ଦେବା ।"

ଶ୍ରୀପତି ଆସି ରାଜାଙ୍କୁ ଅଭିବାଦନ ଜଣାଇବା ମାତ୍ରେ ରାଜା ରୁକ୍ଷ ଭାବରେ କହିଲେ, "ଶ୍ରୀପତି! ପୁରସ୍କାର ସମ୍ବାଦ ତମକୁ ବ୍ୟକ୍ତିଗତ ଭାବରେ ଦିଆ ଯାଇଛି ମାତ୍ର । ସର୍ବ-ସାଧାରଣରେ ଘୋଷଣା ହୋଇନାହିଁ । ସେ ଘୋଷଣା ହେବାକୁ ବିଳମ୍ବ ଅଛି । ଘୋଷଣାର ମାସକ ପରେ ଯାଇ ପୁରସ୍କାର ଦିଆ ହେବ । ତମେ..."

ଶ୍ରୀପତି ନମ୍ର ଭାବରେ କହିଲେ "ମହାରାଜ! ମୁଁ ସେଥିପାଇଁ ଦୌଡ଼ି ଆସିଛି । ଆପଣ ଘୋଷଣା କରିବା ପୂର୍ବରୁ ମୁଁ ଆପଣଙ୍କୁ ପଚାରିବାକୁ ଚାହେଁ, ଯେଉଁ ରାଜ୍ୟରେ ଲଳିତ ମିଶ୍ର ଭଳି ମହାକବି ଅଛନ୍ତି, ସେ ରାଜ୍ୟରେ ମୋ ଭଳି କବିକୁ ସମ୍ମାନ ଦେବାର ସିଦ୍ଧାନ୍ତ କରାଗଲା କାହିଁକି ? ଆପଣ ଦୟାକରି ଆପଣଙ୍କ ସିଦ୍ଧାନ୍ତର ପୁନର୍ବିଚାର କରନ୍ତୁ । ମୋର ନମ୍ର ଅନୁରୋଧ, ତାଙ୍କୁ ସମ୍ମାନ ଦିଅନ୍ତୁ । ଲଳିତ ମିଶ୍ରଙ୍କ ପ୍ରତିଭା ତୁଳନାରେ ମୋର କାବ୍ୟକୃତି ତୁଚ୍ଛ ।"

ଲଳିତ ମିଶ୍ର ଉଠି ପଡିଲେ ଓ ଶ୍ରୀପତିଙ୍କୁ କୁଣ୍ଢାଇ ପକାଇ କହିଲେ, "କବି ଶ୍ରୀପତି! ରାଜା କବିତାର ମାନ ନିର୍ଣ୍ଣୟ କରିବାରେ ସୁଦକ୍ଷ । ସେ ଯେତେବେଳେ ତୁମ କବିତାରେ ମୁଗ୍ଧ ହୋଇଛନ୍ତି, ସେତେବେଳେ ତୁମେ ଯେ ପୁରସ୍କାର ପାଇବାର ଯୋଗ୍ୟ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ତୁମେ ଯେଉଁ ଲଳିତ ମିଶ୍ର କଥା କହୁଛ, ସେ ଲୋକ ମୁଁ । ତୁମେ ମଣିଷ ହିସାବରେ କେଡ଼େ ମହତ୍, ତା'ର ପରିଚୟ ପାଇଲି । ଉଭୟ ଦୃଷ୍ଟିରୁ ତୁମେ ରାଜ ସମ୍ମାନର ଯୋଗ୍ୟ ।"

ଯଥା ସମୟରେ ପୁରସ୍କାର-ପ୍ରଦାନ ଉତ୍ସବ ଅନୁଷ୍ଠିତ ହେଲା । ରାଜକବି ଲଳିତ ମିଶ୍ରହିଁ ଶ୍ରୀପତିଙ୍କୁ ପୁରସ୍କାର ପ୍ରଦାନ କଲେ ।



ପ୍ରଥମ ଜଣକ କହିଲେ, "ମୁଁ ବି ତ ସେଇଆ କହୁଥିଲି । କିନ୍ତୁ ରାଜାଙ୍କର ଯେଉଁ ଦୂତ କବି ଶ୍ରୀପତି ପାଖକୁ ବାର୍ତ୍ତା ନେଇ ଯାଇଥିଲା, ତାହାର ସ୍ତ୍ରୀ ମୋ ସ୍ତ୍ରୀକୁ ଏକଥା କହିଛନ୍ତି । ସେ ଭୁଲ କହିବାର କୌଣସି କାରଣ ନାହିଁ ।"

କବି ଲଳିତ ମିଶ୍ର ଗମ୍ଭୀର ହୋଇଗଲେ । ପରଦିନ ସେ ରାଜାଙ୍କୁ ଏକୁଟିଆ ପାଇ ପଚାରିଲେ, "ମହାରାଜ! ମୁଁ ଗୋଟିଏ ବିସ୍ମୟକର କଥା ଶୁଣିଲି । ଆପଣ କୁଆଡ଼େ ଶ୍ରୀପତି ନାମକ ଜଣେ କବିକୁ ସମ୍ମାନିତ କରିବାକୁ ଯାଉଛନ୍ତି, ମୋତେ ନୁହେଁ !"



ରାଜା ହସିଦେଇ କହିଲେ, "ତୁମକୁ ସମ୍ମାନ କରିବାରେ ନୂତନତା କ'ଣ? ତମେ ରାଜକବି । ତୁମେ ମୋର ସବୁଠାରୁ ପ୍ରିୟ କବି ବୋଲି ସମସ୍ତେ ଜାଣନ୍ତି । ତମକୁ ଅଧିକ ସମ୍ମାନ କ'ଣ କରାଯାଇପାରେ ?"

ରାଜାଙ୍କର ଏଭଳି ସ୍ପଷ୍ଟ କଥା ଶୁଣି ଲଳିତ ମିଶ୍ର କ'ଣ କହିବେ ଠଉରାଇ ପାରିଲେ ନାହିଁ । ତେବେ ରାଜାଙ୍କ କୈଫିୟତ୍ ଯେ ତାଙ୍କୁ ସନ୍ତୁଷ୍ଟ କରିପାରି ନାହିଁ, ଏକଥା ତାଙ୍କ ମୁହଁ ଦେଖି ରାଜା ବୁଝି ପାରୁଥିଲେ ।

ରାଜା ଆହୁରି କିଛି କହିବାକୁ ଉଦ୍ୟତ ହେଉଥିଲେ ସେତିକିବେଳେ ଜଣେ ଦ୍ୱାରରକ୍ଷୀ ଆସି କହିଲା, "ମହାରାଜ! ସୁମନ୍ତପୁର ଗ୍ରାମର ଶ୍ରୀପତି ନାମକ ଜଣେ ବ୍ୟକ୍ତି ଆପଣଙ୍କୁ ଜରୁରୀ ଭେଟିବାକୁ ଇଚ୍ଛା କରୁଛନ୍ତି । ସେ ଜଣେ କବି ବୋଲି ନିଜର ପରିଚୟ ଦେଉଛନ୍ତି ।"

ଲଳିତ ମିଶ୍ର ଉତ୍ତେଜିତ ଭାବରେ କହିଲେ, "ଦେଖିଲେ ତ? ଲୋକଙ୍କ ଖବର ପାଇବା ମାତ୍ରେ ପୁରସ୍କାର ନେବାକୁ ଉଚ୍ଛନ୍ନ ହୋଇ ଦୌଡ଼ି ଆସିଛନ୍ତି ।"

ଶ୍ରୀପତିଙ୍କୁ ତାଙ୍କ ପାଖକୁ ନେଇ ଆସିବାକୁ ରାଜା ଦ୍ୱାରରକ୍ଷୀକୁ କହିଲେ । କିନ୍ତୁ ଶ୍ରୀପତିଙ୍କ ଏ ଉଚ୍ଛନ୍ନତା ଯୋଗୁଁ ତାଙ୍କ ମନ ବି ଖରାପ ହୋଇଗଲା । ସେ କହିଲେ, "ବୁଝିଲି କବି ଲଳିତ! ଶ୍ରୀପତିର କବିତା ମୁଁ ବହୁତ ପଢ଼ିଛି । ସେ ବାସ୍ତବିକ ମହାନ୍ କବି । ତେବେ




[୧୩]

[ଚନ୍ଦ୍ରବର୍ମା ଓ କାପାଳିକ ଶଂଖ ଥିବା ପାହାଡ଼ ଉପରକୁ ଉଠିଗଲେ । ଶଂଖ ବାଟରେ ଅଚେତନ ଅବସ୍ଥାରେ ପଥର ଖସିଯିବା ଯୋଗୁଁ ତଳେ ପଡ଼ି କୁଆଡ଼େ ଲୁପ୍ତ ହୋଇ ଯିବାର ସେମାନେ ଦେଖିଲେ । ପାହାଡ଼ ଉପରେ ଚନ୍ଦ୍ରବର୍ମା କାଳକେତୁର ସହାୟତାରେ କାପାଳିକ ସକାଶେ ଗୋଟିଏ ଛୋଟିଆ ଘର ତୋଳିଦେଲେ । ତା'ପରେ ସେ ବିଦାୟ ନେଲେ । ବଣ ଭିତରେ ତାଙ୍କୁ ଗୋଟିଏ ବଳିଷ୍ଠ ଲମ୍ବା ଖଂଜର ମିଳିଲା । ସେତିକିବେଳେ ଗୋଟିଏ ଭୟାଳ କୁକୁର ତାଙ୍କ ଆଡେ ଝପଟି ଆସିଲା । ତା'ପରେ···]

ଚନ୍ଦ୍ରବର୍ମା ସେ କୁକୁର ଦାଉରୁ ରକ୍ଷା ପାଇବା ନିମନ୍ତେ ତରବାରି ବାହାର କଲେ । ତାକୁ ସେ ତରବାରି ଦ୍ୱାରା ଆଘାତ କରିବାକୁ ପ୍ରସ୍ତୁତ ହେବା ବେଳକୁ ତାଙ୍କ ଅନ୍ୟ ହାତରେ ଥିବା ଖଂଜରଟି ଯାଇ କୁକୁର ମୁଣ୍ଡରେ ବାଜିଲା । କୁକୁର ସେ ପ୍ରଚଣ୍ଡ ଆଘାତରେ ମୁହଁ ମାଡ଼ି ତଳେ ପଡିଗଲା । ଚନ୍ଦ୍ରବର୍ମା ଚିତ୍କାର କରି ସେ ଧ୍ୱନି ଦ୍ୱାରା କୁକୁରକୁ ଡରାଇ ଦେବା ସମ୍ଭବ ବୋଲି ବିଶ୍ୱାସ କରି କୁକୁର ଆଡ଼େ ଅଗ୍ରସର ହେଲେ । କୁକୁର ମୁହୂର୍ତ୍ତକ ଭିତରେ ଦେହ ଝାଡ଼ିଝୁଡ଼ି ଉଠି ଠିଆ ହେଲା । କିନ୍ତୁ ଚନ୍ଦ୍ରବର୍ମାଙ୍କ ହାତରେ ଥିବା ଖଂଜର ଉପରେ ତା' ଆଖି



ପଡ଼ିଯିବା ମାତ୍ରେ ସେ ଶଙ୍କିଗଲା ଏବଂ ଦୌଡ଼ି ପଳାଇ ଗୋଟାଏ ବୁଦା ମୂଳରେ ଠିଆ ହୋଇ ତାଙ୍କ ଆଡ଼େ ଅନାଇଲା ।

ପ୍ରଥମେ ଚନ୍ଦ୍ରବର୍ମା ଭାବିଲେ ଯେ କୁକୁର ଟିକିଏ ଦମ୍ଭ ସଞ୍ଚୟ କରୁଛି; ପୁଣି ତାଙ୍କୁ ଆକ୍ରମଣ କରିବ । ସେ ଜଂଜିର ଧରି ତା' ଆକ୍ରମଣକୁ ସାମ୍ନା କରିବା ନିମନ୍ତେ ପ୍ରସ୍ତୁତ ହୋଇ ରହିଲେ । କିଛି ସମୟ ବିତିଗଲା । କିନ୍ତୁ କୁକୁର ତାଙ୍କ ଆଡ଼େ ଜୁଳୁ ଜୁଳୁ କରି ଅନାଇଥାଏ । ସତେ ଅବା ସେ ତାଙ୍କର ବହୁତ ଚିହ୍ନା!

କୁକୁରର ବ୍ୟବହାରରେ ଏଭଳି ଆକସ୍ମିକ ପରିବର୍ତ୍ତନ ଦେଖି ଚନ୍ଦ୍ରବର୍ମା ଆଶ୍ଚର୍ଯ୍ୟ ହେଲେ । ସେ ଜଂଜିର ଖଣ୍ଡିକ ଆଡ଼େ ଥରେ ଅନାଇ ତାକୁ କୁକୁର ଆଡ଼େ ଫୋପାଡ଼ି ଦେଲେ । କୁକୁର ତାକୁ ଶୁଙ୍ଘି ସେ ଖଣ୍ଡିକ କାମୁଡ଼ି ଧରି ପୁଣି ଚନ୍ଦ୍ରବର୍ମାଙ୍କ ପାଖକୁ ଘେନି ଆସିଲା । ସେ ଲାଞ୍ଜ ହଲାଉଥାଏ ।

ଚନ୍ଦ୍ରବର୍ମା ବୁଝି ପାରିଲେ ଯେ ସେ ଜଂଜିରର କୌଣସି ବିଶେଷ ଗୁଣ ଅଛି । ସେ ଜଂଜିରର ଗୋଟିଏ ପ୍ରାନ୍ତରେ କୁକୁରକୁ ବାନ୍ଧିଲେ ।

କୁକୁର ଭୁକିଲା ଏବଂ ଚନ୍ଦ୍ରବର୍ମାଙ୍କୁ ଗୋଟିଏ ବୁଦା ଆଡ଼େ ଟଣାଟଣି କଲା । ଚନ୍ଦ୍ରବର୍ମା ବୁଝି ପାରିଲେ କୁକୁର କୌଣସି ନିର୍ଦ୍ଦିଷ୍ଟ ବସ୍ତୁ ଆଡ଼େ ତାଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କରୁଛି । ପ୍ରଥମେ ତାଙ୍କର ସନ୍ଦେହ ହୋଇଥିଲା, ସେ କୁକୁର ହୁଏତ ପ୍ରକୃତରେ କୁକୁର ନୁହେଁ, ଅନ୍ୟ କୌଣସି ରାକ୍ଷସୀ ଜୀବ । କୁକୁର ରୂପରେ ବୁଲୁଛି । ବର୍ତ୍ତମାନ ସେ ବୁଝିଲେ ଯେ ତାହା ବାସ୍ତବିକ କୁକୁର ।

କୁକୁର ଚନ୍ଦ୍ରବର୍ମାଙ୍କୁ ବଣ ବୁଦା କଡ଼େ କଡ଼େ ଗୋଟିଏ ସରୁ ରାସ୍ତାରେ ତଳକୁ ନେଇଗଲା । ସେଠାରେ ଗୋଟିଏ ଝରଣା କୂଳରେ ଗୋଟିଏ କୁଡ଼ିଆ ତାଙ୍କର ଦୃଷ୍ଟି ଗୋଚର ହେଲା ।

ଚନ୍ଦ୍ରବର୍ମା ଭାବିଲେ ବୋଧହୁଏ କୁକୁରର ଖାଉନ୍ଦ ସେ କୁଡ଼ିଆରେ ରହୁଛି । ତେଣୁ କୁକୁର ସେଆଡ଼େ ଅଗ୍ରସର ହେଉଛି । ସେ ନିଜ ହାତରେ ଥିବା ଜଂଜିର ପୁରାପୁରି କୁକୁର ଗଳାରେ ଛନ୍ଦି ଦେଇ ତାକୁ ଛାଡ଼ି ଦେଲେ ।



ସେ ନିଜେ ବହୁତ ହାଲିଆ ହୋଇ ଯାଇଥିଲେ । ପ୍ରଥମେ ଝରଣା କୂଳକୁ ଯାଇ ନିଜ ତୃଷା ମେଣ୍ଟାଇଲେ ଓ ଟିକିଏ ବିଶ୍ରାମ କଲେ ।

କୁକୁର ଯାଇ କୁଡ଼ିଆ ଭିତରେ ପଶିଲା । ଚନ୍ଦ୍ରବର୍ମା ଭାବୁଥିଲେ ତହିଁ ଭିତରୁ କେହି ବାହାରି ଆସିବ । କିନ୍ତୁ କେହି ବାହାରିବାର ସେ ଦେଖିଲେ ନାହିଁ । କୁକୁର ଏକୁଟିଆ ବାହାରି ଆସି ଏଣେତେଣେ ଅନାଇଲା ।

ଚନ୍ଦ୍ରବର୍ମା ଧିରେ ଧିରେ ଅଗ୍ରସର ହୋଇ କୁଡ଼ିଆ ଭିତରେ ପଶିଲେ । ସେ ଦେଖିଲେ ଭିତରେ ଖଣ୍ଡିଏ ଖଟିଆ ପଡ଼ିଛି । ପାଖରେ ଦୁଇ ଚାରିଗୋଟି କଳସ ଅଛି । କିନ୍ତୁ ମଣିଷ କେହି ନାହାନ୍ତି । କିଛି ପୁରୁଣା ଲୁଗାପଟା ମଧ୍ୟ ଗୋଟିଏ କୋଣରେ ଜମା ହୋଇ ରହିଥିଲା ।

ସେ କୁଡ଼ିଆରେ ଗରିବ ଲୋକଟିଏ ରହୁଥିବ ବୋଲି ଚନ୍ଦ୍ରବର୍ମା ଆନୁମାନ କଲେ । ସଙ୍ଗେ ସଙ୍ଗେ ମନରେ ପ୍ରଶ୍ନ ଉଠିଲା : ସେ ନିର୍ଜନ ବଣ ଭିତରେ ଏକାକୀ ଲୋକଟି କ'ଣ ପାଇଁ ରହୁଛି ? ସେ ଲୋକ ଆଉ ଜଣେ ତାନ୍ତ୍ରିକ ନୁହେଁ ତ ?

ଚନ୍ଦ୍ରବର୍ମା ଯାଇ ସେସବୁ କଳସ ଓ ହାଣ୍ଡିମାନ ପରୀକ୍ଷା କରି ଦେଖିଲେ । ଏ କୁଡ଼ିଆର ବାସିନ୍ଦା ଯଦି ତାନ୍ତ୍ରିକ ବା ପିଶାଚ ଜାତୀୟ କେହି ହୋଇଥିବ, ତେବେ ତା'ର ପ୍ରମାଣ ଏସବୁରୁ ମିଳିଯାଇପାରେ । ସେ ଘରର ଚାରିଆଡ଼କୁ ବି ଅନାଇଲେ । କୌଣସି ନରକଙ୍କାଳ ବା ଖପୁରି ବା ତାନ୍ତ୍ରିକ ବ୍ୟବହାର କଲାଭଳି ଅନ୍ୟ କୌଣସି ବସ୍ତୁ ସେଠି ରହିଛି କି ? ଏ ଅଜ୍ଞାତ ଅଞ୍ଚଳରେ ପ୍ରତି ମୁହୂର୍ତ୍ତରେ ସତର୍କ ହୋଇ ଚାଲିବା କଥା ।

ହଠାତ୍ ଶୁଭିଲା ଗୋଟିଏ ବୃଦ୍ଧ କଣ୍ଠସ୍ୱର :

"ଖବରଦାର ! ଚୁପ୍‌ଚାପ୍ ବସି ରୁହ । ଟିକିଏ ହଲିଲେ ତମ ପିଠିରେ ବଲ୍ଲମ୍ ଭୁଷି ଦେବି । ପଛକୁ ନ ଅନାଇ ମୋ ପ୍ରଶ୍ନର ଉତ୍ତର ଦିଅ । ଯଦି ତମ ଉତ୍ତର ମୋତେ ସନ୍ତୁଷ୍ଟ କରିବ, ତେବେ ଭଲ କଥା । ତମର କ୍ଷତି କରିବା ତ ଦୂରର କଥା, ବରଂ ତମର ସହାୟତା କରିବି । ମୁଁ ମୋ ଶତ୍ରୁକୁ

ଖୋଜୁଛୁ । ତମେ ଯଦି ସେ ଲୋକ ହୋଇ ନଥିବ, ତେବେ ଚିନ୍ତା ନାହିଁ । ନିଜ ବାଟରେ ଯାଇପାର, ନହେଲେ ମୋ ସହ ରହିପାର ।"

ଚନ୍ଦ୍ରବର୍ମାଙ୍କ ଦେହ ଶିତେଇ ଉଠିଲା । ସେ ନିଜ କର୍ତ୍ତବ୍ୟ ନିରୂପଣ କରିବାକୁ ଚେଷ୍ଟା କଲେ । ସତକୁ ସତ ଯଦି ଲୋକଟି ହାତରେ ବଲମ୍ ଥିବ, ତେବେ ହୁଏତ ଚନ୍ଦ୍ରବର୍ମା ଭୁଲ୍ ପଡ଼ିବା ମାତ୍ରେ ସେ ତାଙ୍କୁ ଆଘାତ କରିବ ।

ଚନ୍ଦ୍ରବର୍ମା ନୀରବ ରହିବାର ଦେଖି ଲୋକଟି ପୁଣି ଗର୍ଜନ କରି କହିଲା, "ଚୋର! ମୋ ଘରେ ପଶି କରୁଥିଲୁ କ'ଣ? ଭାବୁଛୁ ଚୁପ୍ ରହି ମୋ ହାତରୁ ନିସ୍ତାର ପାଇଯିବୁ? ତୁ ନିଶ୍ଚୟ ମୋର ଶତ୍ରୁ!"

"ବାବୁ! ମୁଁ ତମ ଶତ୍ରୁ କାହିଁକି ହୁଅନ୍ତି? ମୁଁ ତମ ମିତ୍ର । ମୋତେ ହଇରାଣ କର ନାହିଁ ।" ଚନ୍ଦ୍ରବର୍ମା କହିଲେ ।

"ମିତ୍ର? ତମେ ମୋ ମିତ୍ର? ନାହିଁ, ମୁଁ ସେପରି ଭାବିବାର ତ କୌଣସି କାରଣ ନାହିଁ! ତମ ସାଙ୍ଗରେ ଥିବା ସେ ସୈନ୍ୟ କୁଆଡ଼େ ଗଲେ?"

ଚନ୍ଦ୍ରବର୍ମା ଏ ପ୍ରଶ୍ନରେ ବିବ୍ରତ ବୋଧ କଲେ । ଲୋକଟି କେଉଁ ସୈନ୍ୟ କଥା କହୁଛି? ଦିନ ଥିଲା ଯେତେବେଳେ ଯୁବରାଜ ଭାବରେ ସର୍ବଦା ସେ ସୈନ୍ୟ ସାମନ୍ତ ଗହଣରେ ବୁଲୁଥିଲେ । କିନ୍ତୁ ବର୍ତ୍ତମାନ ତ ସେ ନିଃସଙ୍ଗ!

"ମୋ ସାଙ୍ଗରେ ସୈନ୍ୟ କାହୁଁ ଆସିବେ? କ'ଣ କହୁଛ?" ଚନ୍ଦ୍ରବର୍ମା ବିସ୍ମୟରେ ଏତକ



କହି ଧୀର କଣ୍ଠରେ ପୁଣି କହିଲେ, "ବାଟ ଭୁଲି ମୁଁ ଆସି ଏ ବଣରେ ବୁଲୁଛି । ଦୈବକୁ ତମ କୁକୁର ସାମ୍ନାରେ ପଡ଼ିଗଲି । ସେ ମୋତେ ପ୍ରାଣରୁ ମାରି ଦେଇଥାନ୍ତା, ତେବେ ଗୋଟିଏ ଜଂଜିର ଯୋଗୁଁ ସେ ମୋର ବଶ ହେଲା । ତାହାରି ଯୋଗୁଁ ମୁଁ ଆସି ଏଠି ପହଞ୍ଚିଛି । ଜାଣେନା, ଆଉ କେତେଦିନ ପର୍ଯ୍ୟନ୍ତ ମୋତେ ଏମିତି ଅନିଶ୍ଚିତ ଭାବରେ ବୁଲିବାକୁ ପଡ଼ିବ ।"

"ଓ, ତମେ ସେ ଜଂଝିର ପାଇଗଲ ପରା ! ସେ ଜଂଜିର ଯୋଗେ ମୋ ପୁଅ ମୋ କୁକୁରକୁ ବୁଲାଇବାକୁ ନେଉଥାଏ । ତାକୁ ରାଜ ସୈନ୍ୟମାନେ ଧରି ନେଇଗଲେ । ଜଂଜିର ସେ ତଳେ ପକାଇ ଦେଇଥିବ । ତମ ହାତରେ ଜଂଜିରଟି ଦେଖି କୁକୁର ତମକୁ ମୋ ପୁଅର ମିତ୍ର ବୋଲି ଠଉରାଇଥିବ । ଥଉ । କହିଲ, ମୋ ପୁଅର ଖବର କ'ଣ ? ସେ ବଞ୍ଚିଛି ନା ତାକୁ ହତ୍ୟା କରାଯାଇଛି ?" ସେ ଲୋକ ପଚାରିଲା ।

ଚନ୍ଦ୍ରବର୍ମାଙ୍କୁ ଏସବୁ ଖବର ଆଶ୍ଚର୍ଯ୍ୟ କଲା । ସେ ବୁଝିଲେ, ଲୋକଟି ତାଙ୍କୁ ରାଜାଙ୍କ କର୍ମଚାରୀ ମନେ କରୁଛି । ରାଜାଙ୍କ ସୈନ୍ୟମାନେ ଯେହେତୁ ତା' ପୁଅକୁ ଧରିନେଇ ଯାଇଛନ୍ତି, ତାଙ୍କ ପ୍ରତି ବୁଢ଼ାର ମନୋଭାବ ବିରୂପ ହେବା ସ୍ୱାଭାବିକ ।

ସେ ନିଜ କର୍ତ୍ତବ୍ୟ ନିରୂପଣ କରି କହିଲେ, "ବାବୁ, ତମେ କେଉଁ ରାଜା କଥା କହୁଛ, ମୁଁ ଜାଣେନା । ମୁଁ ରାଜ-କର୍ମଚାରୀ ନୁହେଁ । ତମ





ପୁଅକୁ ଧରିନେଇଯିବା ଘଟଣା ସହ ମୋର କୌଣସି ସମ୍ପର୍କ ନାହିଁ। ମୋ ଅଣ୍ଟାରେ ଥିବା ତରବାରିଟି ତମେ କାଢ଼ି ନିଅ। ତେଣିକି ବସି କଥାବାର୍ତ୍ତା କରିବା।"

ଚନ୍ଦ୍ରବର୍ମା ଏତିକି କହିସାରିବା ମାତ୍ରେ ଲୋକଟି ତାଙ୍କ ତରବାରି କାଢ଼ି ନେଲା। "ଏଣିକି ତମେ ମୋ ଆଡ଼କୁ ମୁହଁ ବୁଲାଇ ବସିପାର।" ସେ କହିଲା। "ମୋତେ ଧୋକା ଦେବାର ଚେଷ୍ଟା କଲେ ମୃତ୍ୟୁ ନିଶ୍ଚିତ।"

ଚନ୍ଦ୍ରବର୍ମା ମୁହଁ ବୁଲାଇଲେ। ସେ ଦେଖିଲେ, ଲୋକଟିର ବୟସ ସତୁରିରୁ କମ୍ ନୁହେଁ। ଦାଢ଼ୀ ନିଶ ଧଳ୍ ଧଳ୍ ସଫେଦ୍। ତା ଆଖି ଯୋଡ଼ିକ ଲାଲ୍ ଦିଶୁଥାଏ। ଗୋଟିଏ ହାତରେ ବଲ୍ଲମ୍ ଓ ଅନ୍ୟ ହାତରେ ତରବାରି ଧରି ସେ ଠିଆ ହୋଇଥାଏ।

"ଦେଖ ବାବୁ, ମୁଁ କୌଣସି କର୍ମଭ୍ରଷ୍ଟ ନୁହେଁ। ମୁଁ ବର୍ତ୍ତମାନ ଗୋଟିଏ ରାଜ୍ୟର ରାଜା ହୋଇଥିବା କଥା। ଦୁର୍ଭାଗ୍ୟରୁ ବଣରେ ନିର୍ବାସିତ ଭଳି ବୁଲୁଛି। ତମ ପୁଅକୁ ବନ୍ଦୀ ବନାଇ ଥିବା ରାଜା କିଏ?" ଚନ୍ଦ୍ରବର୍ମା ପଚାରିଲେ।

"ତମେ ବର୍ତ୍ତମାନ କେଉଁ ରାଜ୍ୟର ସୀମାରେ ରହିଛ, ସେକଥା ଜାଣ ନା?" ବୁଢ଼ା ଆଶ୍ଚର୍ଯ୍ୟ ହୋଇ ପଚାରିଲା।

ଚନ୍ଦ୍ରବର୍ମା ମୁଣ୍ଡ ହଲାଇ ନାହିଁ କଲେ। ବୁଢ଼ା ତାଙ୍କ ଆଡ଼େ ଥରେ ଭଲ ଭାବରେ ଦୃଷ୍ଟିପାତ କରି କହିଲା, "ତମେ ଏଠାରେ ନୂଆ, ଏଥିରେ ମୋର ସନ୍ଦେହ ନାହିଁ। ତମେ ଯଦି ରାଜ୍ୟ ହରାଇ ବଣରେ ବୁଲୁଛ, ତେବେ ତମର ସହାୟତା କରିବା ମୋର କର୍ତ୍ତବ୍ୟ। ବଦଳରେ ତମେ ମୋର ସହାୟତା ନିଶ୍ଚୟ କରିବ ତ?"

"ମୋଠାରୁ କି ପ୍ରକାର ସହାୟତା ଆଶା କରୁଛ କୁହ। ମୋ ସାଧ୍ୟ ବାହାରେ ନହେଲେ ନିଶ୍ଚୟ ସହାୟତା କରିବ।" ଚନ୍ଦ୍ରବର୍ମା କହିଲେ।

"ମୋ ପୁଅକୁ ରୁଦ୍ରପୁରର ରାଜା ଶିବସିଂହ ବନ୍ଦୀ କରିଛି। ମୁଁ ଲୁଚି ଯାଇ ସୈନ୍ୟମାନଙ୍କ

ହାତ ଏଡ଼ାଇ ଗଲି । ତେବେ ରାଜା ମୋର ଶତ୍ରୁ ହୋଇଥିବା ସ୍ଥଳେ କେତେଦିନ ବଞ୍ଚି ରହି ପାରିବ, ସେ ଆଶଙ୍କା ମୋ ମନରେ ସର୍ବଦା ରହିଛି । ରାଜା ଯଦି ମୋ ପୁଅକୁ ହତ୍ୟା କରିଥିବ, ତେବେ ମୋର ଆଉ କିଛି କରିବାର ନାହିଁ । ଯଦି ମୋ ପୁଅ ଜୀବିତ ଥିବ, ତେବେ ମୁଁ ବରଂ ତା' ସହି ସନ୍ଧି କରି ଧୂସର ଦୁର୍ଗରେ ପହଞ୍ଚିବାର ନକ୍ସା ଦେଇ-ପାରେଁ ।" ବୁଢ଼ା କହିଲା ।

"କ'ଣ କହିଲ ? ଧୂସର ଦୁର୍ଗ ?" ଚନ୍ଦ୍ରବର୍ମା ଆଶ୍ଚର୍ଯ୍ୟ ହୋଇ ପଚାରିଲେ । "ତମେ ଯେଉଁ ଧୂସର ଦୁର୍ଗ କଥା କହୁଛ, ସେ ଧୂସର ଦୁର୍ଗ ବିଷୟରେ ମୁଁ ଅନେକ ଦିନରୁ ଶୁଣିଛି । ସେ କୁଆଡ଼େ ପ୍ରକୃତରେ କଂସାରେ ତିଆରି । ପଶ୍ଚିମ ସମୁଦ୍ର କୂଳରେ ତାହା ଅବସ୍ଥିତ । ଶୁଣିଛି ସେ ରାସ୍ତାରେ ଯିଏ ଯାଏ, ସିଏ ଫେରି ଆସିପାରେ ନାହିଁ । ତମେ ତେବେ ସେଠାକୁ ଯିବା ପାଇଁ ରାସ୍ତାର ନକ୍ସା ରଖିଛ !" ଆଶ୍ଚର୍ଯ୍ୟ ହୋଇ ଚନ୍ଦ୍ରବର୍ମା ପଚାରିଲେ ।

"ହଁ । ରାଜା ସେଇ ଗୋଟିକ ମୋଠୁଁ ଜବରଦସ୍ତି ଛଡ଼ାଇ ନେବାକୁ ଲୋକ ପଠାଇଥିଲା । ସେମାନେ ମୋତେ ମାରି ପକାଇଥାନ୍ତେ ବା ଧରି ପକାଇଥାନ୍ତେ । ମୁଁ ଦୌଡ଼ି ପଳାଇ ଖସିଗଲି । ମୋ ପୁଅ ଧରା ପଡ଼ିଗଲା । ସେ ଧୂସର ଦୁର୍ଗ ଅଭିମୁଖେ ଯିବା




ଲୋକଙ୍କ ଭିତରୁ ଅନେକେ ପ୍ରାଣ ଦେଇଛନ୍ତି ବୋଲି ଜାଣ ନା ନାହିଁ ?"

"ହଁ, ସେକଥା ଶୁଣିଛି ।" ଚନ୍ଦ୍ରବର୍ମା କହିଲେ ।

ବୁଢ଼ା ହସିଲା ଓ କହିଲା, "ତମେ ଧୂସର ଦୁର୍ଗ ବିଷୟରେ ଅନେକ କିଛି ଜାଣ ବୋଲି ମୋର ଧାରଣା । ସେଠାକୁ ଯିବା ସକାଶେ ରାସ୍ତାର ନକ୍ସା ମୁଁ ଯୋଗାଇ ଦେବି । ତେବେ ରାଜା ଶିବସିଂହ ମୋତେ ସେଠାରୁ ମିଳିବା ଧନରତ୍ନରୁ କିଛି ଅଂଶ ଦେବାକୁ ପ୍ରସ୍ତୁତ ରହିବା ଦରକାର । ତମେ ଯାଇ ରାଜାକୁ ଏ ସର୍ତ୍ତରେ ରାଜି କରାଅ । ସଙ୍ଗେ ସଙ୍ଗେ ମୋ ପୁଅ ଦେବଳକୁ ମୁକ୍ତ କରାଅ । ତମେ ଏତିକ

କରାଇ ପାରିଲେ ମୋତେ ରାଜା ଯାହା ଦେବ ସେଥିରୁ ତମକୁ ମୁଁ ଅଂଶ ଦେବି । ତମେ ତାହା ସାହାଯ୍ୟରେ ତମ ରାଜ୍ୟ ଉଦ୍ଧାର କରିପାରିବ ।"

ଚନ୍ଦ୍ରବର୍ମା ମନଦେଇ ବୁଢ଼ାର କଥା ଶୁଣିଲେ । ତାଙ୍କର ଧାରଣା ହେଲା, ବୁଢ଼ା ମୋଟେ ସାଧାରଣ ଲୋକ ନୁହେଁ । ବୁଢ଼ାର ଚତୁର ବୁଦ୍ଧି ଯେପରି ପ୍ରଖର, ଶାରୀରିକ କ୍ଷମତା ମଧ୍ୟ ସେହିପରି ବୟସ ତୁଳନାରେ ବହୁତ ବେଶି । ସେ କହିଲେ, "ବାବୁ, ତମ ସର୍ତ୍ତରେ ମୁଁ ରାଜି । ତେବେ ତମେ ସେ ନକ୍ସା ଥରେ ମୋତେ ଦେଖାଇବ ନାହିଁ ?"

ବୁଢ଼ା ଚନ୍ଦ୍ରବର୍ମାଙ୍କ କଥାରେ ପ୍ରସନ୍ନ ହେଲା ବୋଲି ତା' ମୁଖଭାବରୁ ଜଣାଗଲା । ସେ କିଛି କହିବାକୁ ଯାଉଛି, ସେତିକିବେଳେ କୁଡ଼ିଆ ବାହାରୁ କୋଳାହଳ ଶୁଭିଲା ।

"ଶୁଣ, ଆଉ ସମୟ ନଷ୍ଟ କରିବା କଥା ନୁହେଁ । ତମେ ଏମାନଙ୍କୁ ମୋ ସର୍ତ୍ତ କଥା ଜଣାଇ ଦିଅ । ତେବେ ଅସଲ କଥା ହେଲା; ସେମାନେ ଯେପରି ମୋ ପୁଅର କୌଣସି ହାନି କରିବେ ନାହିଁ । ମୁଁ ନିଃଶ୍ତସ୍ୱ ନକ୍ସା ଦେଇ ଦେବି ।" ଏହା କହି ବୁଢ଼ା ବକ୍ଳ ବେଗରେ କୁଡ଼ିଆ ଭିତରୁ ବାହାରି ଯାଇ ବଣବୁଦା ଭିତରେ ଲୁଚିଗଲା ।

ଆଖି ପିଛୁଳାକେ ଏସବୁ ଘଟିଗଲା । ଚନ୍ଦ୍ରବର୍ମା ଅବାକ୍ ହୋଇଗଲେ । ବୁଢ଼ା ତାଙ୍କୁ ବିପଦରେ ପକାଇ ପଳାଇଗଲା । ସେ ବର୍ତ୍ତମାନ କରିବେ କ'ଣ ?

ରାଜ ସୈନ୍ୟମାନେ କ୍ରମେ କୁଡିଆ ଘେରି ଯାଇ ପାଖକୁ ପାଖକୁ ଆସିଯାଉଥିବାର ସେ ବୁଝି ପାରିଲେ ।

"ଭିତରେ ଯିଏ ଅଛ ବାହାରି ଆସ । ପଳାଇବାର ଚେଷ୍ଟା କଲେ ପ୍ରାଣ ଯିବ ।" ସୈନ୍ୟଦଳର ନେତା କହିଲା ।

ସାହସ ସଞ୍ଚୟ କରି ଚନ୍ଦ୍ରବର୍ମା ବାହାରି ଆସିଲେ ।

(କ୍ରମଶଃ)






# ଚନ୍ଦ୍ର ଓ ଚକୋର

ନିଶା ଗରଜୁଥାଏ । ଭୁହାକୁ ଭୁହା ଶୀତଳ ପବନ ସାଙ୍ଗକୁ ମଝେ ମଝେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା ! ଆପଣ ଏ ଭୟାବହ ରାତିରେ ଯେ ଏଭଳି ଶ୍ରମ ସ୍ୱୀକାର କରୁଛନ୍ତି, ଏହା ପଛରେ କାହାର ହାତ ଅଛି ? ସେ ଆପଣଙ୍କୁ ଯେଉଁ ନିର୍ଦ୍ଦେଶ ଦେଇଛି, ଆପଣ ତାହା ଠିକ୍

## ବେତାଳ କଥା



ଭାବରେ ବୁଝିଛନ୍ତି ତ? ଅନେକ ସମୟରେ ଜଣେ ଗୋଟାଏ କଥା ବୁଝାଉଥାଏ, ଅନ୍ୟ ଜଣେ ତାକୁ ଭିନ୍ନ ଭାବରେ ବୁଝେ। ଏହାର ଗୋଟାଏ ଦୃଷ୍ଟାନ୍ତ ଦେଉଛି, ମନଦେଇ ଶୁଣ। ଶୁଣିଲେ ଶ୍ରମ ଭାର ଲାଘବ ମନେ ହେବ।"

ବେତାଳ କହିଲା: ସବୁଜଗିରି ରାଜ୍ୟର ରାଜା ଚନ୍ଦ୍ରଦେବଙ୍କ ଦରବାରରେ ବିମଳାଦିତ୍ୟ ନାମକ ଜଣେ କବି ଥିଲେ। ସର୍ବଦା ସେ ଉପମା ବା ଛନ୍ଦକଳା ଜରିଆରେ, ଲଳିତ ମଧୁର ଭାବରେ କଥା କହୁଥିଲେ। ରାଜା ତାଙ୍କର ବହୁତ ଆଦର କରୁଥିଲେ।

ବିମଳାଦିତ୍ୟ ଯଦି ବଜାର ସଉଦା କରିବାକୁ ଯାଉଥିଲେ, ସେଠି ବି ଦୋକାନୀମାନେ ନିଜ କାମଦାମ ଛାଡ଼ି ମୁଗ୍ଧ ଭାବରେ ତାଙ୍କ କଥା ଶୁଣୁଥିଲେ। ଆଉ କେହି ତାଙ୍କୁ ଅନୁକରଣ କରି କବିତାରେ କଥା କହିବାକୁ ଚେଷ୍ଟା କଲେ ଲୋକେ କହୁଥିଲେ, "ଥାଉ, ଥାଉ, ଏତେ ସହଜରେ ବିମଳାଦିତ୍ୟ ବନିବା ସମ୍ଭବ ନୁହେଁ। ସେଭଳି ପ୍ରତିଭା ଜନ୍ମଗତ। ବୁଝିଲ?"

ବିମଳାଦିତ୍ୟ ପାଖରେ ସେବକ ରୂପେ ଯୋଗ ଦେଇଥାଏ କେଶବ ନାମକ ବାଳକ। ସତ କଥା ହେଲା, କେଶବ ଜଣେ ଥିଲାବାଲା ଘରର ପିଲା। କାହା ଘରେ ସେବକ ହେବାର ଆବଶ୍ୟକତା ତା'ର ନଥିଲା। କିନ୍ତୁ ବିମଳାଦିତ୍ୟଙ୍କ ପ୍ରତି ଗଭୀର ଭକ୍ତି ଯୋଗୁଁ ତାଙ୍କ ଘରେ କାମ କରୁଥାଏ।

ବିମଳାଦିତ୍ୟ ବି ତା' ପ୍ରତି ସଦୟ ଥିଲେ। ଯେତେବେଳେ ଘରେ କାମଦାମ ନଥାଏ, ସେତେବେଳେ କେଶବ ବହିପତ୍ର ପଢ଼ାରେ ମନୋନିବେଶ କରୁଥାଏ। ବିମଳାଦିତ୍ୟ ତାକୁ ଉତ୍ସାହ ଦେଉଥାନ୍ତି। ସେ ସାହିତ୍ୟର କୌଣସି ସମସ୍ୟା ବୁଝି ନ ପାରିଲେ ତାକୁ ବୁଝାଇ ଦେଉଥାନ୍ତି। ବିମଳାଦିତ୍ୟ ଯାହା କହୁଥାନ୍ତି, ସେ ତାକୁ ମନେ ରଖୁଥାଏ।

କ୍ରମେ କେଶବର ବି ବିମଳାଦିତ୍ୟଙ୍କ ଭଳି କଥା କହିବାର ଅଭ୍ୟାସ ହୋଇଗଲା। ସେ ଯେ ଜାଣିଶୁଣି ସେଭଳି କଥାବାର୍ତ୍ତା କରୁଥାଏ, ତାହା ନୁହେଁ, ସ୍ୱତଃସ୍ଫୁର୍ତ୍ତ ଭାବରେହିଁ ସେ ତାହା କରୁଥାଏ। ଦୋକାନ ବଜାରରେ



ଲୋକେ କହିବାକୁ ଆରମ୍ଭ କଲେ, "ଏ ଯୁବକ କମଳାଦିତ୍ୟଙ୍କ ଉପଯୁକ୍ତ ଶିଷ୍ୟ ଏକା !"

ଦିନେ କବି କମଳାଦିତ୍ୟ ଅସୁସ୍ଥତା ହେତୁ ଦରବାରକୁ ଯାଇ ପାରିଲେ ନାହିଁ । ସେ କେଶବକୁ କହିଲେ, "ରାଜାଙ୍କୁ ଯାଇ କହିଦେ, ଆଜି ଚକୋର ପାଇଁ ଅମାବାସ୍ୟା ।"

କେଶବ ନମ୍ର ଭାବରେ ରାଜପ୍ରାସାଦକୁ ଗଲା ।

ରାଜା ସେତେବେଳେ ପ୍ରାସାଦର ଏକ ନିର୍ଜନ ବାରନ୍ଦାରେ ବିଶ୍ରାମ କରୁଥିଲେ । କେଶବ ଯାଇ ତାଙ୍କୁ ଅଭିବାଦନ କରି କହିଲା, "ମହାରାଜ ! ଆଜି ଆପଣଙ୍କୁ ଅମାବାସ୍ୟାର ଚକୋର ରୂପେହିଁ ସମୟ କଟାଇବାକୁ ପଡ଼ିବ ।"

ରାଜା ଭ୍ରୂକୁଞ୍ଚନ କରି କହିଲେ, "ସତେ ? ବଡ଼ ଆନନ୍ଦର କଥା ! ବଡ଼ ଆନନ୍ଦର କଥା !"

"ହଁ ମହାରାଜ । ଆପଣଙ୍କର ଆନନ୍ଦ ସ୍ୱାଭାବିକ !" ଏହା କହି କେଶବ ବୁଲି ପଡ଼ିଲା ।

"ଶୁଣ ଯୁବକ !" ରାଜା ଗମ୍ଭୀର ଭାବରେ କେଶବକୁ ଡାକିଲେ । କେଶବ ତାଙ୍କ ଆଡ଼କୁ ଅଗ୍ରସର ହୋଇ ପୁଣି ଅଭିବାଦନ କରନ୍ତେ ରାଜା ପ୍ରଶ୍ନ କଲେ, "ଯୁବକ ! ତମେ କ'ଣଟା ବୁଝି ପକାଇଲ ଯେ ଗୋଟାଏ ମନ୍ତବ୍ୟ ଦେଇଦେଲ ? ମୁଁ କାହିଁକି ଆନନ୍ଦିତ ?"

"ମହାରାଜ ! ଆଜି ଅମାବାସ୍ୟା ତ ଆଗାମୀ କାଲି ପ୍ରତିପଦ । ଦିନକୁ ଦିନ ଚନ୍ଦ୍ର ବଢ଼ିବ । ତେଣୁ ଚକୋର ଆନନ୍ଦିତ ନ ହେବ କିଆଁ ?"

ରାଜାଙ୍କ ବିରକ୍ତି ଭାବ ଦୂର ହୋଇ ସଙ୍ଗେ ସଙ୍ଗେ ତାଙ୍କ ମୁହଁ ଉଜ୍ଜ୍ୱଳ ଦେଖାଗଲା । ସେ କେଶବକୁ ପାଖକୁ ଡାକି ତା' ସହ ଆହୁରି କିଛି ସମୟ ଗପସପ ହେଲେ । ସେ ଯିବା ବେଳକୁ ତାକୁ କିଛି ପୁରସ୍କାର ମଧ୍ୟ ଦେଲେ ।

କେଶବ ଲେଉଟି ଯାଇ କମଳାଦିତ୍ୟଙ୍କୁ ପୁରସ୍କାର ବିଷୟ କହିବାରୁ କମଳାଦିତ୍ୟ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ମୋ ଅସୁସ୍ଥତାରେ ରାଜା ଦୁଃଖିତ ନ ହୋଇ ପୁରସ୍କାର ଦେଲେ ?"

"ମହାଶୟ ! ଆପଣଙ୍କ ଦୂତ ରିକ୍ତ ହସ୍ତରେ ଫେରି ଆସିବା ସେ ପସନ୍ଦ କଲେ ନାହିଁ ନିଶ୍ଚୟ !" କେଶବ କହିଲା ।

କମଳାଦିତ୍ୟ ଖୁସି ହେଲେ ।



ପରଦିନ ତାଙ୍କ ଅସୁସ୍ଥତାର ଉପଶମ ହେଲା ନାହିଁ । ସେ ପୁଣି କେଶବକୁ ରାଜଦରବାରକୁ ପଠାଇଲେ । କେଶବ ସେଦିନ ରାଜାଙ୍କ ପାଖରେ ଆହୁରି ଅଧିକ ସମୟ ରହିଲା ।

ସେ ଫେରି ଆସିବାରୁ ବିମଳାଦିତ୍ୟ କୌତୁହଳୀ ହୋଇ ପଚାରିଲେ, "ବାଟରେ କେଉଁଠି ଅଟକିଗଲୁ ?"

"ମହାଶୟ, ବାଟରେ ଅଟକି ନାହିଁ । ରାଜାଙ୍କ ପାଖରେହିଁ ଥିଲି । ସେ ନାନା ପ୍ରଶ୍ନ ପଚାରୁଥିଲେ । ମୁଁ ଉତ୍ତର ଦେଉଥିଲି ।"

ବିମଳାଦିତ୍ୟଙ୍କ ମୁହଁ ଶୁଖିଗଲା । ସେ କିଛି କହିଲେ ନାହିଁ କି ରାଜାଙ୍କ ସହ କେଶବର କି ଧରଣର ଗପସପ ହେଉଥିଲା, ସେ କଥା ମଧ୍ୟ ପଚାରିଲେ ନାହିଁ । ତହିଁ ପରଦିନ ମଧ୍ୟ ବିମଳାଦିତ୍ୟ ଦରବାରକୁ ଯିବା ଭଳି ଅବସ୍ଥାରେ ନଥିଲେ । କେଶବ ତାହା ବୁଝିପାରି ସଫା ଲୁଗାପଟା ପିନ୍ଧି ତାଙ୍କୁ ଆସି କହିଲା, "ମହାଶୟ, ମୁଁ ତେବେ ଯାଇ ରାଜାଙ୍କୁ କହିଦିଏଁ !"

"ତୋତେ ଏତେ ବାହାଦୁରି ଦେଖାଇବାକୁ କିଏ କହୁଛି ? ଚୁପ୍ କରି ରହ । ମୋ ବିନା ଅନୁମତିରେ କାହାରି ଆଗରେ ମୁହଁ ଫିଟାଇବୁ ନାହିଁ ।" ବିମଳାଦିତ୍ୟ କହିଲେ ।

"ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ, ମହାଶୟ!"

ବିମଳାଦିତ୍ୟ ତାଙ୍କ ପୂଜାରିକୁ ରାଜାଙ୍କ ପାଖକୁ ପଠାଇଲେ । ପୂଜାରି ଯାଇ କହିଲା, "ମହାରାଜ! ଆଗାମୀ କାଲି କବିବର ଆପଣଙ୍କୁ ଭେଟିବେ । ସେ ସୁସ୍ଥ ହେଲେଣି ।"

"କେଶବ କୁଆଡ଼େ ଗଲା ?" ରାଜା ପଚାରିଲେ ।

"ଘରେ ଅଛି, ଆଜ୍ଞା । କବିବର ତାକୁ ଆସିବାକୁ ବାରଣ କରି ମୋତେ ପଠାଇଲେ ।"

ରାଜା ଗମ୍ଭୀର ସ୍ୱରରେ କହିଲେ, "ଆଚ୍ଛା! କବିବର ଅସୁସ୍ଥ ଅଛନ୍ତି । ତେବେ, ତାଙ୍କର ଯଦି ଇଚ୍ଛା, ତେବେ ସେ ଆସି ପାରନ୍ତି ।"

ପୂଜାରି ଯାଇ ବିମଳାଦିତ୍ୟଙ୍କୁ ରାଜାଙ୍କ ବକ୍ତବ୍ୟ ଜଣାଇଲା ।

ପରଦିନ ବିମଳାଦିତ୍ୟ ରାଜାଙ୍କୁ ଭେଟିଲେ ଓ କହିଲେ, "ମହାରାଜ ! ଆପଣଙ୍କ ଉଦ୍ୟାନରେ ଚନ୍ଦନ ବୃକ୍ଷ ଥାଉଁ ଥାଉଁ ଚନ୍ଦନ



ଲେପନ କରିଥିବା ବ୍ୟକ୍ତି ପ୍ରତି ଆପଣଙ୍କର ଏତେ ଆକର୍ଷଣ କାହିଁକି ?"

ରାଜା ମୃଦୁ ହସି କହିଲେ, "ଚନ୍ଦନ ପ୍ରଲେପ ଯିଏ ଲଗାଇଥାଏ, ସେ ଗୁଣୀ, ନଚେତ୍ ନୁହଁ । ଚନ୍ଦନ ପ୍ରଲେପ ଧାରୀ ବ୍ୟକ୍ତି ଚନ୍ଦନର ସୁବାସ ବିତରଣ କରି ଚନ୍ଦନ ବୃକ୍ଷର ମର୍ଯ୍ୟାଦାହିଁ ବଢ଼ାଇଛି ।"

କମଳାଦିତ୍ୟ ଚୁପ୍ ରହିଲେ । ରାଜା ପ୍ରଶ୍ନ କଲେ, "କବିବର ! ଏଣିକି ଆପଣଙ୍କୁ ପ୍ରତ୍ୟହ ଖାଣ୍ଟି ଦୁଗ୍ଧ ଯୋଗାଣର ବ୍ୟବସ୍ଥା ହେବ; ଆପଣଙ୍କୁ ନଅରର ପୂର୍ବ ଦିଗରେ ଉଚ୍ଚ ସ୍ଥାନ ଉପରେ ଅବସ୍ଥିତ ଗୋଟିଏ ଘରେ ସ୍ଥାନ ଦିଆଯିବ । ସେ ସ୍ଥାନ ସନ୍ତସନ୍ତିଆ ନୁହେଁ ।"

କମଳାଦିତ୍ୟ ଆଶ୍ଚର୍ଯ୍ୟ ହୋଇ ରାଜାଙ୍କ ଆଡ଼େ ଅନାଇ ରହିବାରୁ ରାଜା କହିଲେ, "ଯାହାର ସେବକ ଚନ୍ଦ୍ରକୁ ଚକୋର କରିଦେଇ ପାରେ, ସେ ଭାଗ୍ୟବାନ !" କମଳାଦିତ୍ୟ ଘରକୁ ଲେଉଟି ଆସି ସଙ୍ଗେ ସଙ୍ଗେ କେଶବକୁ କୁଣ୍ଢାଇ ପକାଇଲେ ଓ କହିଲେ, "ମୋ ବ୍ୟବହାର ଯୋଗୁଁ ମୋତେ କ୍ଷମା କର । ତୁ ଆଜିଠାରୁ ମୋ ପୁଅ ଏବଂ ମୋର ଉତ୍ତରାଧିକାରୀ ।"

କେଶବ ଅଶ୍ରୁ ରୋଧ କରି ପାରିଲା ନାହିଁ । ସେ ଖାଲି ଏତିକି କହିଲା, "ଗୁରୁ ଓ ପିତା ! ମୁଁ ଅତ୍ୟନ୍ତ ଭାଗ୍ୟବାନ !"

ବେତାଳ ଟିକିଏ ଚୁପ୍ ରହି ଧମକ ଦେଲା ଭଳି କଣ୍ଠରେ ପ୍ରଶ୍ନ କଲା, "ରାଜା ! ମୋର ଗୁଡ଼ିଏ ସନ୍ଦେହ ଅଛି । କମଳାଦିତ୍ୟ ସୁସ୍ଥ ହେବାର ଶୁଣି ମଧ୍ୟ ରାଜା କାହିଁକି କହିଲେ କି ସେ ଅସୁସ୍ଥ ? ଯାହାର ସେବକ ଚନ୍ଦ୍ରକୁ ଚକୋର ବନାଇଦେଇ ପାରେ ବୋଲି ସେ କହିବାର ଅର୍ଥ କ'ଣ ? ଯେଉଁ କମଳାଦିତ୍ୟ କେଶବ ପ୍ରତି ଈର୍ଷାନ୍ୱିତ ହୋଇଥିଲେ, ସେ ହଠାତ୍ ତାକୁ ପୁଅ ବୋଲି ସମ୍ବୋଧନ କଲେ କାହିଁକି ? ରାଜା ! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, "ରାଜା ଚନ୍ଦ୍ରଦେବ ବୁଝିପାରିଲେ

ଯେ ବିମଳାଦିତ୍ୟ ଈର୍ଷାକାତର ହୋଇଥିବା ଯୋଗୁଁ କେଶବକୁ ନ ପଠାଇ ପୁଷ୍ପାରିକୁ ପଠାଇଛନ୍ତି । ଈର୍ଷା ଏକ ପ୍ରକାର ବ୍ୟାଧି । ତେଣୁ ସେ କହିଲେ କି ବିମଳାଦିତ୍ୟ ଅସୁସ୍ଥ । ବିମଳାଦିତ୍ୟ ଦ୍ୱିତୀୟ ଦିନ ରାଜାଙ୍କ ସହ କେଶବର କି'ଣ କଥାବାର୍ତ୍ତା ହୋଇଛି, ସେକଥା କେଶବକୁ ପଚାରି ନଥିଲେ । ରାଜା ତାଙ୍କ ପାଇଁ ଖାଣ୍ଟି ଦୁଗ୍ଧ ବ୍ୟବସ୍ଥା କରିବା ଓ ସନ୍ତସନ୍ତିଆ ସ୍ଥାନରୁ ତାଙ୍କୁ ଭଲ ଘରକୁ ଉଠାଇ ଆଣିବା ପ୍ରସ୍ତାବ ଦେବା ମାତ୍ରେ ସେ ବୁଝିଲେ ଯେ ତାଙ୍କର ସେସବୁ ଅସୁବିଧା ବିଷୟ ଏକମାତ୍ର କେଶବହିଁ କହିଥିବା ସମ୍ଭବ । ତେଣୁ କେଶବ ପ୍ରତି ତାଙ୍କର ଈର୍ଷ୍ୟାଭାବ ଅନ୍ତର୍ହିତ ହୋଇ କୃତଜ୍ଞତା ଜାତ ହେଲା ।

"ବାକି ରହିଲା ଚନ୍ଦ୍ର ଓ ଚକୋର ପ୍ରହେଳିକା । ଯେତେବେଳେ ବିମଳାଦିତ୍ୟ କହି ପଠାଇଲେ କି ଆଜି ଚକୋର ପାଇଁ ଅମାବାସ୍ୟା, ସେ ନିଜକୁ ଚକୋର ମନେ କରିଥିଲେ । ରାଜାଙ୍କ ନାମ ଯେହେତୁ ଚନ୍ଦ୍ରଦେବ, ତେଣୁ ତାଙ୍କୁ ସେ ଚନ୍ଦ୍ର ବୋଲି ଗ୍ରହଣ କରିଥିଲେ । କିନ୍ତୁ କେଶବର କବିଙ୍କ ପ୍ରତି ଶ୍ରଦ୍ଧା ଏତେ ପ୍ରଗାଢ଼ ଯେ ସେ ସହଜରେ ଧରିନେଲେ କବିବରହିଁ ଚନ୍ଦ୍ର, ରାଜା ଚକୋର ! ରାଜା ଏହି କଥା ଦର୍ଶାଇବା ଦ୍ୱାରା କବିଙ୍କ ପ୍ରତି କେଶବର ଶ୍ରଦ୍ଧା କଥା କବିଙ୍କୁ ସୂଚାଇ ଦେଲେ । କବି ଚନ୍ଦନବୃକ୍ଷ ହୋଇ ପାରନ୍ତି, କିନ୍ତୁ କେଶବ ସେ ଚନ୍ଦନ ଲଗାଇ ଗଛର ଗୁଣଗାନ କରୁଥିଲା !"

"ରାଜାଙ୍କ କଥାରେ କବିବରଙ୍କ ଧାରଣା ବଦଳିଗଲା । ସେ କେଶବର ପ୍ରକୃତ ସ୍ୱଭାବ ବୁଝି ଭାବାବେଗରେ ତାକୁ କୁଣ୍ଢାଇ ପକାଇଲେ ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)






# ଶାପ ମୁକ୍ତି

ବଣ ଭିତରେ ଆସିଥାଏ ବସନ୍ତ । ଗଛଲତା ଉଜ୍ଜଳ ସବୁଜ ଦିଶୁଥାନ୍ତି । ପୁଷ୍ପଗଛର ମହକରେ ଚତୁର୍ଦ୍ଦିଗ ଉଲ୍ଲସି ଉଠୁଥାଏ ।

ଜଣେ ଗନ୍ଧର୍ବ ଆନନ୍ଦରେ ବଣରେ ବୁଲୁଥାନ୍ତି ଓ ଗୀତ ବୋଲୁଥାନ୍ତି । ବଣ ଭିତରେ ଆଉ କେହି ଅଛି କି ନାହିଁ ସେ ପ୍ରତି ତାଙ୍କର ଲକ୍ଷ୍ୟ ନଥାଏ । ଅଜାଣତରେ ସେ ଜଣେ ଋଷିଙ୍କ କମଣ୍ଡଳୁ ଝୁଣ୍ଟି ପଡ଼ିଲେ ।

ଗନ୍ଧର୍ବ ତମକି ପଡ଼ି ହାତ ଯୋଡ଼ କଲେ । କିନ୍ତୁ ଋଷିଙ୍କ ଧ୍ୟାନ ଭଙ୍ଗ ହୋଇ ଯାଇଥାଏ । ସେ କ୍ରୁଦ୍ଧ ଦିଶୁଥିଲେ ।

"ହଇରେ ପିଶାଚ ! ମୋ ଗଙ୍ଗାଜଳ ଢକ ନଷ୍ଟ କରିଦେଲୁ ? ତୁ ପିଶାଚ ହୋଇ ରହ !" ଋଷି ଶାପ ଦେଲେ ।

"ଆଜ୍ଞା, ସାମାନ୍ୟ ଭୁଲ ପାଇଁ ଏତେ ବଡ଼ ଶାପ ? କ୍ଷମା କରନ୍ତୁ । ଶାପ ଫେରାଇ ନିଅନ୍ତୁ ।" ଗନ୍ଧର୍ବ ଋଷିଙ୍କୁ ମିନତି କରି କହିଲେ ।

ଋଷିଙ୍କ ରାଗ ଯେତେ ଚଞ୍ଚଳ ଚଢ଼ି ଯାଇଥିଲା, ସେତେ ଚଞ୍ଚଳ ପୁଣି ଖସି ଆସିଲା । "ଆରେ ବାବୁ, ମୁଁ ଅଭିଶାପ ଫେରାଇ ନେଇ ପାରିବି ନାହିଁ । ତେବେ ତୋତେ ବେଶିଦିନ ପିଶାଚ ହୋଇ ରହିବାକୁ ହେବ ନାହିଁ । ତୁ ମଣିଷ ଦେଖିଲେ ରଡ଼ି ଛାଡ଼ିବୁ । ଯେଉଁଦିନ ଏମିତି ମଣିଷଟିଏ ଦେଖିବୁ ଯିଏ କି ତୋ ରଡ଼ିରେ ମୋଟେ ଡରିବ ନାହିଁ, ସେହିଦିନ ପିଶାଚ ରୂପରୁ ମୁକ୍ତି ପାଇବୁ ।" ଋଷି କହିଲେ ।

ଗନ୍ଧର୍ବ ଗୃହୁଁ ଗୃହୁଁ ପିଶାଚ ପାଲଟିଗଲେ । ସେହିଦିନ ସେ ଗୋଟିଏ କାଠୁରିଆ ବଣରେ ପଶୁଥିବାର ଦେଖି ରଡ଼ି ଛାଡ଼ିଲେ । ସଙ୍ଗେ ସଙ୍ଗେ କାଠୁରିଆ ତା କୁଠାର ପକାଇଦେଇ ଦୌଡ଼ି ପଳାଇଲା ।

ସୁରେନ୍ଦ୍ର

ଦ୍ୱିତୀୟ ଓ ତୃତୀୟ ବ୍ୟକ୍ତି ବି ସେମିତି ପ୍ରାଣମୂର୍ଚ୍ଛା ପଳାୟନ କଲେ । ତା'ପରେ ଆଉ କେହି ସେ ବଣରେ ପଶିଲେ ନାହିଁ । କାରଣ ସେଠାରେ ପିଶାଚ ଥିବାର ପ୍ରଚାର ହୋଇଗଲା ।

ଗନ୍ଧର୍ବ ସେ ବଣ ଛାଡ଼ି ଅନ୍ୟ ଗୋଟିଏ ବଣରେ ପଶିଲେ । ସେଠାରେ ବି ସମସ୍ତେ ତାଙ୍କ ରଡ଼ି ଶୁଣି ପୃଷ୍ଠଭଙ୍ଗ ଦେଲେ ଏବଂ ଦୁଇ ତିନିଦିନ ପରେ କେହି ବଣରେ ପଶିଲେ ନାହିଁ ।

ଗନ୍ଧର୍ବ ବଡ଼ରି ବଡ଼ ଅଡ଼ୁଆରେ ପଡ଼ିଲେ । ସେ ପୁଣି ଗୋଟିଏ ନୂଆ ବଣର ସନ୍ଧାନ ପାଇ ସେଠି ପହଞ୍ଚିଲେ । ପରଦିନ ଜଣେ ଧୋବ-ଧାଉଳିଆ ବାଟୋଇକୁ ଦେଖି ରଡ଼ି ଛାଡ଼ିଲେ । କିନ୍ତୁ ବାଟୋଇ ଭିତରେ ବି ଡରିବାର ଲକ୍ଷଣ ଦେଖାଗଲା ନାହିଁ । "ଦେଖିବାକୁ ଦୁର୍ବଳ, କିନ୍ତୁ କେଡ଼େ ସାହସୀ!" ଗନ୍ଧର୍ବ ମନେ ମନେ ଭାବିଲେ ଓ ପୁଣି ଗୋଟାଏ ହୁଙ୍କାର ଦେଲେ । ଲୋକଟି ତଥାପି ଖାତିର୍ କଲା ନାହିଁ । ଏଣେ ଅଭିଶାପର ସର୍ତ୍ତ ଅନୁସାରେ ଗନ୍ଧର୍ବ ନିଜ ରୂପ ଫେରି ପାଇଲେ । ସେ ଯାଇ ଲୋକଟି ଆଗରେ ଠିଆ ହୋଇ କହିଲେ, "ଧନ୍ୟବାଦ !"

ଲୋକଟି ତାଙ୍କ ଆଡ଼େ ଅନାଇ ନିଜ କାନରେ ହାତ ଦେଇ କହିଲା, "ମହାଶୟ ! ମୁଁ କାଲ । ଦଶବର୍ଷ ହେଲା କିଛି ଶୁଣି ପାରୁ ନାହିଁ । ମୋର ଦୁର୍ଭାଗ୍ୟ !"

"ଆପଣଙ୍କ ଦୁର୍ଭାଗ୍ୟ ମୋର ସୌଭାଗ୍ୟର କାରଣ ହେଲା । ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରି ଆପଣଙ୍କୁ ଏହି ବର ଦେଉଛି, ଆପଣଙ୍କ ଶ୍ରୁତି ଶକ୍ତି ଫେରି ଆସୁ !" ଗନ୍ଧର୍ବ କହିଲେ ।

ସଙ୍ଗେ ସଙ୍ଗେ ବାଟୋଇ ଝରଣାର କୁଳୁକୁଳୁ ଧ୍ୱନି ଓ ପକ୍ଷୀଙ୍କ କୂଜନ ଶୁଣି ପାରିଲେ । ସେ ଆଶ୍ଚର୍ଯ୍ୟ ହୋଇ କହିଲେ, "ଇଏ କ'ଣ!" ନିଜ କଣ୍ଠ ବି ସେ ଶୁଣି ପାରିଲେ ।

ଗନ୍ଧର୍ବ ତାଙ୍କୁ ତାଙ୍କ କାହାଣୀ ଶୁଣାଇଲେ । ଦୁହେଁ ଦୁହିଁଙ୍କୁ ଧନ୍ୟବାଦ ଦେଇ ପରସ୍ପରଠାରୁ ବିଦାୟ ନେଲେ ।






ଭାରତର ମନ୍ଦିର

# ମୀନାକ୍ଷି ମନ୍ଦିର

ଏକଦା ପୃଥିବୀ ଭ୍ରମଣରେ ଆସି ଦେବରାଜ ଏକ ମନୋରମ ଉଦ୍ୟାନ ଭିତରେ ବସି ଶିବଙ୍କୁ ଧ୍ୟାନ କଲେ । ସେ ଯଥା ସମୟରେ ସ୍ୱର୍ଗକୁ ଫେରିଗଲେ, କିନ୍ତୁ ସେ ଅରଣ୍ୟକୁ ପବିତ୍ର କରିଦେଇଗଲେ ।

ଥରେ ଜଣେ ରାଜା ସେ ଅରଣ୍ୟରେ ଶିକାର ପାଇଁ ପଶିଲେ, କିନ୍ତୁ ହଠାତ୍ ଶିକାରରୁ ତାଙ୍କ ମନ ଛାଡ଼ିଗଲା । ଶାନ୍ତି ଓ ସହୃଦୟତାରେ ତାଙ୍କ ହୃଦୟ ପୂରିଗଲା । ସେ ବୁଝିଲେ, ଏହା ସେ ସ୍ଥାନର ମାହାତ୍ମ୍ୟ ।





ରାତିରେ ରାଜା ସ୍ୱପ୍ନ ଦେଖିଲେ, ସେ ବଣ ଉପରେ ମଧୁ ବର୍ଷା ହେଉଛି । ତାଙ୍କର ମନେ ହେଲା ସ୍ୱୟଂ ଶିବ ସେ ମଧୁ ବର୍ଷା କରୁଛନ୍ତି । ସକାଳେ ରାଜା ଘୋଷଣା କଲେ କି ନିଜ ରାଜଧାନୀ ସେ ସେହି ବଣ ଥିବା ସ୍ଥାନକୁ ଉଠାଇ ଆଣିବେ ।



ତାହାହିଁ ହେଲା । ନୂତନ ନଗରୀର ନାମ ହେଲା ମଧୁରପୁର । କିଛିଦିନ ପରେ ରାଣୀ ଗୋଟିଏ କନ୍ୟା ପ୍ରସବ କଲେ । କନ୍ୟାଟି ଅପୂର୍ବ ସୁନ୍ଦରୀ; ଆଖିଯୋଡ଼ିକର ଆକାର ଅତି ସୁକୁମାର ହୋଇଥିବାରୁ ତାଙ୍କ ନାମ ହେଲା ମୀନାକ୍ଷି ।

ରାଜକୁମାରୀ ମୀନାକ୍ଷି ବୁଦ୍ଧି, ଜ୍ଞାନ ଓ ଅସ୍ତ୍ର କୌଶଳରେ ସମସ୍ତଙ୍କୁ ଚମକାଇ ଦେଲେ । ରାଜାଙ୍କର ପୁତ୍ର ନଥିବାରୁ ସେ ରାଜାଙ୍କ ଅନ୍ତେ ସିଂହାସନରେ ବସିଲେ । କ୍ରମେ ରାଜଧାନୀ ମଧୁରପୁରକୁ ଲୋକେ ମଦୁରାଇ ବୋଲି ଡ଼ାକିଲେ ।






ରାଜକୁମାରୀ ମୀନାକ୍ଷିଙ୍କ ପ୍ରତାପ ଓ ସୁଶାସନ ଦେଖି ପାଖ ପଡ଼ୋଶୀର ରାଜାମାନେ ଭୀଷଣ ଈର୍ଷା କଲେ । ଜଣେ ନାରୀ ଏତେ ଜନପ୍ରିୟ ହେବା ସେମାନେ ସହିପାରୁ ନଥିଲେ । ସେମାନେ ନିଜ ନିଜ ଭିତରେ ଷଡ଼ଯନ୍ତ୍ର କରି ମଦୁରାଇ ଆକ୍ରମଣ କଲେ ।



ରାଜକୁମାରୀ ମୀନାକ୍ଷି ସ୍ୱୟଂ ନିଜ ସୈନ୍ୟବାହିନୀର ନେତୃତ୍ୱ ନେଇ ଶତ୍ରୁମାନଙ୍କ ସାମ୍ନା କଲେ । ସେ ବିଦ୍ୟୁତ୍ ଗତିରେ ଅଶ୍ୱ ଛୁଟାଇ ସେମାନଙ୍କ ଭିତରକୁ ମାଡ଼ିଗଲେ । ତାଙ୍କ କ୍ଷିପ୍ର ତରବାରୀ ଚାଳନା ଆଗରେ କେହି ତିଷ୍ଠି ପାରିଲେ ନାହିଁ । ଯିଏ ନ ମଲା, ସିଏ କୌଣସି ମତେ ପଳାଇଯାଇ ବର୍ତ୍ତିଗଲା ।



ମୀନାକ୍ଷି କେତେବେଳେ ଯୁଦ୍ଧଭୂମି ଅତିକ୍ରମ କରି ଆଗକୁ ଆସି ଗୋଟିଏ ଅରଣ୍ୟରେ ପ୍ରବେଶ କରିଥିଲେ, ତାଙ୍କର ସେ ବିଷୟରେ ହେତୁ ନଥିଲା । ହଠାତ୍ ସେ ନିଜ ଆଗରେ ଦେଖିଲେ ଜଣେ ଅପରୂପ ପୁରୁଷଙ୍କୁ । ଦେଖି ଲଗାମ ଟାଣି ଘୋଡ଼ା ରୋକିଲେ ।

ସେ ପୁରୁଷ ଆଉ କେହି ନୁହନ୍ତି, ସ୍ୱୟଂ ଶିବ । ଶିବଙ୍କ ସହ ସାକ୍ଷାତ୍ ମାତ୍ରେ ମୀନାକ୍ଷି ବୁଝିପାରିଲେ ଯେ ସେ ସ୍ୱୟଂ ହେଲେ ପାର୍ବତୀଙ୍କ ଅବତାର । ମୀନାକ୍ଷି ଓ ଶିବଙ୍କର ବିବାହ ହେଲା । ଶିବ ସେଠାରେ ସୁନ୍ଦରେଶ୍ୱର ନାମରେ ବିଦିତ ହେଲେ ।





ରାଜ୍ୟର ଲୋକେ କ୍ରମେ ବୁଝି ପାରିଲେ ଯେ ସେମାନଙ୍କ ରାଣୀ-ମାତା ସ୍ୱୟଂ ପାର୍ବତୀ । ସେମାନେ ତାଙ୍କୁ ପୂଜା କଲେ । ଯେତେବେଳେ ମୀନାକ୍ଷି ଶରୀର ତ୍ୟାଗ କଲେ, ସେତେବେଳେ ସେମାନେ ତାଙ୍କ ବିଗ୍ରହ ପ୍ରତିଷ୍ଠା କରି ତାଙ୍କୁ ପୂଜା କଲେ । ତାଙ୍କ ମନ୍ଦିର ପାଖରେ ସୁନ୍ଦରେଶ୍ୱରଙ୍କ ମନ୍ଦିର ନିର୍ମାଣ କଲେ ।

ଦେବୀ ମୀନାକ୍ଷିଙ୍କ ମନ୍ଦିର ଖାଲି ବିଶାଳ ନୁହେଁ, ଭାସ୍କର୍ଯ୍ୟ ଓ ଶିଳ୍ପ ପାଇଁ ମଧ୍ୟ ବିଖ୍ୟାତ । ଏ ମନ୍ଦିରରେ ରହିଛି ଦଶଗୋଟି ଗୋପୁରମ ବା ମୁଖଶାଳା । ମନ୍ଦିରର ପ୍ରଶସ୍ତ ଆଲିନ୍ଦରେ ରହିଛି ସହସ୍ର ସ୍ତମ୍ଭ ।





ଭାରତ ତଥା ପୃଥିବୀର ଅନ୍ୟତମ ପ୍ରାଚୀନ ନଗରୀ ହେଲା ମଦୁରାଇ । ଦେବୀଙ୍କ ମନ୍ଦିର ନଗରୀର କେନ୍ଦ୍ର ସ୍ଥଳରେ ଅବସ୍ଥିତ । ବର୍ଷଯାକ ଯାତ୍ରୀମାନେ ଏ ପୁଣ୍ୟସ୍ଥାନକୁ ଆକୃଷ୍ଟ ହୋଇ ଆସନ୍ତି । ଭକ୍ତି ସଙ୍ଗୀତ ଓ ବାଦ୍ୟରେ ମନ୍ଦିର ପ୍ରାଙ୍ଗଣ ସର୍ବଦା ମୁଖରିତ ଥାଏ ।



# ପରିବର୍ତ୍ତନ

ନକୁଳବେଢ଼ା ଗୋଟିଏ ଛୋଟ ସହର । ସେଠାରେ ସମସ୍ତେ ସମସ୍ତଙ୍କୁ ଜାଣନ୍ତି କହିଲେ ଚଳେ । ତେଣୁ ଗୋବିନ୍ଦବାବୁଙ୍କ ସ୍ତ୍ରୀ ସୁମତି ଦେବୀଙ୍କୁ କିଏ ବା ନ ଚିହ୍ନନ୍ତି ?

ତେବେ ସୁମତି ଦେବୀଙ୍କୁ ସମସ୍ତେ ଚିହ୍ନନ୍ତି ବୋଲି କହିବାର ଭିନ୍ନ ଅର୍ଥ ଅଛି । ଭଦ୍ର ମହିଳା ଥିଲେ ଅତ୍ୟନ୍ତ ମୁଖର । ଯାହାର ବ୍ୟବହାର ବା ସ୍ୱଭାବ ତାଙ୍କର ନାପସନ୍ଦ ହେବ, ତା'ଙ୍କୁ ଯାହା ମନ ତାହା କହି ଗାଳି ଦେବେ । ତାଙ୍କ ପାଖରେ ଯେଉଁ ଚାକରବାକର ଥା'ନ୍ତି, ସେମାନଙ୍କୁ ଧନ୍ୟବାଦ ଦେବାର କଥା । ଯେ କୌଣସି ମୁହୂର୍ତ୍ତରେ ଗାଳି ବା ମାଡ଼ ଖାଇବା ପାଇଁ ସେମାନଙ୍କୁ ପ୍ରସ୍ତୁତ ହୋଇ ରହିବାକୁ ପଡ଼ୁଥାଏ ।

ଗୋବିନ୍ଦବାବୁ କେତେଥର ସୁମତି ଦେବୀଙ୍କୁ ଚେତାଇ ଦେବାର ଚେଷ୍ଟା କରନ୍ତି : ତୁମ ବିଚାର ଅନୁସାରେ ଦୁନିଆର ସମସ୍ତେ ଚାଲିବେ, ଏପରି ଆଶା କରିବା ଧୃଷ୍ଟତା ମାତ୍ର । ସବୁ ବିଷୟରେ ଅଧୈର୍ଯ୍ୟ ହେଲେ ନିଜ ଦୁଃଖ ସିନା ବଢ଼ିବ, କୌଣସି ସମସ୍ୟାର ସମାଧାନ ହେବ ନାହିଁ । ଆଉ ସମସ୍ତଙ୍କ ଭୁଲ ବାଛିବା ନିଜର ବି ଗୋଟିଏ ବଡ଼ ଭୁଲ ।”

ସୁମତିଙ୍କ ମତିଗତିରେ ଏସବୁ ଉପଦେଶ ବିଶେଷ ପ୍ରଭାବ ପକାଉ ନଥିଲା । କିନ୍ତୁ ଶୀଘ୍ର ଏପରି ଗୋଟିଏ ସମସ୍ୟା ଦେଖାଦେଲା, ଯାହା ତାଙ୍କ ମନକୁ ସତରେ ଦୋହଲାଇ ଦେଲା । ଗୋବିନ୍ଦବାବୁ ଓ ସୁମତି ଦେବୀଙ୍କର ଏକମାତ୍ର ସନ୍ତାନ ହେଲା ଗୋଟିଏ ପୁତ୍ର । ନାମ ସୁକୁମାର । ସୁକୁମାର ବାସ୍ତବିକ ବଡ଼ ଭଲ ପିଲା । ପୁଣି ଗୋବିନ୍ଦବାବୁଙ୍କର ସମ୍ପତ୍ତିବାଡ଼ି ବହୁତ । ତଥାପି କେହି ତାଙ୍କ ଘରେ ଝିଅ ଦେବା ପ୍ରସ୍ତାବ ଉଠାଉ ନଥାନ୍ତି ।

ଶ୍ରୀମତୀ ଆଶାଲତା ବେହେରା



ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ । ନହେଲେ ଶେଷକୁ ତାଙ୍କ ଭାଗ୍ୟରେ ଗୋଟାଏ କଳଙ୍କିତ ଝିଅହିଁ ଜୁଟିବ ।

"ତମେ ଆଜକାଲି ଏମିତି ମନ ଖରାପ କରି ରହୁଛ କାହିଁକି ?" ଦିନେ ଗୋବିନ୍ଦବାବୁ ସୁମତି ଦେବୀଙ୍କୁ ପଚାରିଲେ ।

"ମୁଁ ବାସ୍ତବିକ ଆଜି ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରତି ବଡ଼ ଖରାପ ବ୍ୟବହାର କରି ଆସିଛି । ସେଥିଯୋଗୁଁ ମୋତେ ଆଜି ଭଲ ବୋହୂଟିଏ ମିଳୁ ନାହିଁ । ଏଣିକି ମୁଁ ମୋ କଥାବାର୍ତ୍ତା ଓ ଢଙ୍ଗଢ଼ାଙ୍ଗ ବଦଳାଇବି ।" ସୁମତି ଦେବୀ ଏହା କହି ପ୍ରାୟ କାନ୍ଦି ପକାଇଲେ ।

ଗୋବିନ୍ଦବାବୁ ବହୁତ ଖୁସି ହେଲେ । "ହଁ, ସୁମତି, ଆମ କଥାବାର୍ତ୍ତା, ଆଚାର ବ୍ୟବହାର ଉପରେ ଆମର ନିୟନ୍ତ୍ରଣ ନ ରହିବ ତ କାହାର ରହିବ ? ଆମେ ଯଦି ଇଚ୍ଛା କରିବା, ତେବେ ଜରୁର୍ ଏସବୁ ବଦଳାଇ ଦେଇ ପାରିବା ।" ସେ କହିଲେ ।

ତେଣିକି ସୁମତି ଦେବୀଙ୍କୁ ଆଉ କେହି କେବେ ପାଟି କରି କଥା କହିବାର ଶୁଣିଲେ ନାହିଁ । ତାଙ୍କ ପାଖରୁ ଗାଳି ଗୁଲଜ ପାଇବା ତ ଦୂରର କଥା । ପରିବାରରେ ଶାନ୍ତି ବିରାଜମାନ କଲା । ଅନେକ ସମୟରେ ସୁମତି ଦେବୀ ଚାକରବାକରଙ୍କ ସଙ୍ଗେ ଥଟ୍ଟା କରିବା ଓ ହସିବାର ବି ଦେଖାଗଲା । ଏସବୁରେ ସବୁଠାରୁ ଖୁସି ହେଉଥାନ୍ତି ଗୋବିନ୍ଦବାବୁ ଓ ସୁକୁମାର ।

କେହି କେହି ମଧ୍ୟସ୍ଥ ଗୋବିନ୍ଦବାବୁଙ୍କୁ ଚୁପ୍ ଚୁପ୍ କହିଲେ, "ବୁଝିଲେ ଆଜ୍ଞା, କନ୍ୟା ପିତାମାନେ କହୁଛନ୍ତି, ଗୋବିନ୍ଦବାବୁ ସିନା ମହତ୍ ଲୋକ, କିନ୍ତୁ ସୁମତି ଦେବୀଙ୍କ ପାଖକୁ ଝିଅ ପଠାଇବା ଯାହା ଝିଅକୁ ଫାର୍ନେସ୍ ଭିତରକୁ ଠେଲିଦେବା ସେଇଆ । ସୁମତି ଦେବୀଙ୍କ ମୁହଁ ଆଉ ଫାର୍ନେସ୍ ଭିତରେ ବିଶେଷ ଫରକ୍ ନାହିଁ ।"

ସୁମତି ଦେବୀ କାନ ଡେରି ଏଭଳି ମନ୍ତବ୍ୟ ଥରେ ଅଧେ ଶୁଣିଦେଲେ । ତାଙ୍କ ମନ ବହୁତ ଖରାପ ହୋଇଗଲା । ସେ ଏକୁଟିଆ ଏସବୁ କଥା ଉପରେ ବହୁତ ଚିନ୍ତା କଲେ । ସେ ବୁଝିଲେ ବାସ୍ତବିକ ନିଜକୁ ବଦଳାଇବା



ସୁମତି ଦେବୀଙ୍କ ମନରେ କୌତୁହଳ ଥାଏ : ମୋର ଏ ପରିବର୍ତ୍ତନ ଦେଖି ଅନ୍ୟମାନେ କ'ଣ ମନେ କରୁଛନ୍ତି? ଦିନେ ସେ ଗାଁ ଦାଣ୍ଡରେ ଯାଉଛନ୍ତି, ହଠାତ୍ ତାଙ୍କର ଜଣେ ପଡ଼ୋଶୀ ଘର ଭିତରୁ ତାଙ୍କ ନାମ ଆସି ତାଙ୍କ କାନରେ ପଡ଼ିଲା । ସେ ଅଟକି ଯାଇ କାନ ପାରିଲେ ।

ଜଣେ ମହିଳା କହୁଥାନ୍ତି, "ସୁମତିର କ'ଣ ହେଲା କେଜାଣି, ମୋତେ ବହୁତ ଆଶ୍ଚର୍ଯ୍ୟ ଲାଗୁଛି । ସେଦିନ ରାନ୍ଧିବା ବେଳେ ମୋ ହାତରେ ଫୁଟୁଥିବା ପାଣି ପଡ଼ିଗଲା । ସୁମତି ସେତିକିବେଳେ ଆମ ଘରକୁ ଆସିଥାଏ । ସେ ମୋ ହାତରେ ମଲମ ଲଗାଇ ଦେଇ ମୋତେ ବସାଇ ରଖି ନିଜେ ରାନ୍ଧିଦେଇ ଗଲା ।"

"ଗତ କାଲି ମୋ ପୁଅ ଝିଅ ଓ ପରିଡ଼ାବାବୁଙ୍କ ନାତି ନାତୁଣୀ ଯାଇ ତାଙ୍କ ଘରେ ଏମିତି ଚିଲ୍ଲାଉଥାନ୍ତି ଯେ ମୁଁ ଆମ ଘରେ ଶାନ୍ତିରେ କାମ କରି ପାରିଲି ନାହିଁ । ମୋର ଭୟ ହେଲା ସୁମତି ନୂଆବୋଉ କ'ଣ କହିବେ! କିନ୍ତୁ ସେ ମୋତେ ଦେଖି ହସି ଦେଲେ । ମୁଁ ପିଲଗୁଡ଼ାଙ୍କୁ ଆକଟିବାରୁ ସେ ବରଂ ସେମାନଙ୍କ ପକ୍ଷ ନେଲେ । ଆଶ୍ଚର୍ଯ୍ୟ!" ଆଉ ଜଣେ ମହିଳା କହିଲେ ।

"ଭଉଣୀ! କୁକୁର ଲାଞ୍ଜ ସିଧା ହୁଏନାହିଁ କି ମଣିଷର ପ୍ରକୃତି ବଦଳେ ନାହିଁ । ସୁମତି ଏମିତି ଢଙ୍ଗ ଦେଖାଇବାର କିଛି କାରଣ ଥିବ । ବଳେ ଜଣା ପଡ଼ିଯିବନି?" ଜଣେ ବୟସ୍କା ମହିଳା ଟିପ୍‌ପଣୀ ଦେଲେ ।

ଅନ୍ୟମାନେ କିଛି କହିଲେ ନାହିଁ ।

ସୁମତି ଦେବୀ ପ୍ରଥମ ଦୁହିଁଙ୍କ ମନ୍ତବ୍ୟରେ ଯେଉଁ ଆନନ୍ଦ ପାଇଥିଲେ, ତାହା କୁଆଡ଼େ ଚାଲିଗଲା । ସେ ବହୁତ ଦୁଃଖିତ ହେଲେ ।

ଘରକୁ ଫେରି ଆସିବା ବେଳକୁ କୂଅ ପାଖରୁ ତାଙ୍କ କାନରେ ପଡ଼ିଲା ତାଙ୍କରି ବିଷୟରେ ଆଲୋଚନା । ଆଲୋଚନା କରୁଥିଲେ ସୌଦାମିନୀ ଓ ତା' ସ୍ୱାମୀ । ଦୁହେଁ ତାଙ୍କ ଘରେ କାମ କରୁଥିଲେ ।

"ଆମ ମାଲିକାଣୀଙ୍କର କ'ଣ ହୋଇଛି କେଜାଣି, ସେ ଆଉ ମୋତେ ରଗାରଗି କରୁ

ନାହାନ୍ତି । ଆଜି ସକାଳେ ମୁଁ ଗୋଟାଏ ଗିଲାସ ଭାଙ୍ଗି ପକାଇଲି । ଭାବୁଥିଲି ସେ ଗୋଟାଏ ଗୃହଯୁଦ୍ଧ ଦେବେ । କିନ୍ତୁ ସେ କାଳେ ଭଙ୍ଗା କାଚ ଗୋଟାଇବାକୁ ଯାଇ ମୋ ହାତ କଟିଯିବ, ସେଥିପାଇଁ ସାବଧାନରେ ସେସବୁ ଗୋଟାଇବାକୁ କହିଲେ । ଆଉ କିଛି କହିଲେ ନାହିଁ ।" ସୌଦାମିନୀ କହିଲା ।

"ହଁ । ମୁଁ ବି ତାଙ୍କ ବ୍ୟବହାରରେ ପରିବର୍ତ୍ତନ ଲକ୍ଷ୍ୟ କରୁଛି । କିନ୍ତୁ ମୋତେ ଡର ଲାଗୁଛି । ଝଡ଼ ଆସିବା ପୂର୍ବରୁ ଯେପରି ସବୁ ନିସ୍ତବ୍ଧ ମନେ ହୁଏ, ତାଙ୍କ ଅବସ୍ଥା ସେମିତି ହୋଇଥିବ ପରା! ହଠାତ୍ ସେ କ୍ରୋଧରେ ଫାଟି ପଡ଼ିବେ ନାହିଁ ତ ?" ତା' ସ୍ୱାମୀ କହିଲା ।

ଏଥର ସୁମତି ଦେବୀଙ୍କୁ କାନ୍ଦ ଲାଗିଲା । ସେ ନିଜ କୋଠରୀ ଭିତରକୁ ପଶିଗଲେ ।

"କିହୋ! ତମେ ଏମିତି ଦିଶୁଛ କାହିଁକି ?" ଗୋବିନ୍ଦବାବୁ ପଚାରିଲେ ।

"ମୋର ପରିବର୍ତ୍ତନ ହୋଇଛି ବୋଲି କେହି ବିଶ୍ୱାସ କରୁ ନାହାନ୍ତି । ସମସ୍ତେ ଭାବୁଛନ୍ତି ମୁଁ ଛଳନା କରୁଛି । ତେବେ ଲାଭ କ'ଣ ହେଲା ?" ସୁମତି ଦେବୀ ଏହା କହି ଆଉ ଅଶ୍ରୁ ସମ୍ବରଣ କରି ପାରିଲେ ନାହିଁ ।

"ସୁମତି, ତୁମ ପରିବର୍ତ୍ତନର ଲାଭ କ'ଣ ତୁମେ ନିଜେ ଅନୁଭବ କରିପାରୁ ନାହଁ ? ବିରକ୍ତି, କ୍ରୋଧ, ଏସବୁ ଯିଏ ପୋଷଣ କରେ, ସିଏ ନିଜେହିଁ ପ୍ରଥମେ ଯନ୍ତ୍ରଣା ପାଏ । ତମେ ସେ ଯନ୍ତ୍ରଣାରୁ ମୁକ୍ତ । ଏହାହିଁ ବଡ଼ ଲାଭ ।" ଗୋବିନ୍ଦବାବୁ କହିଲେ ।

ସତରେ ଧିରେ ଧିରେ ସୁମତି ଦେଖିଲେ କିଛି ଦିନ ପରେ ସେ ଛଳନା କରୁଛନ୍ତି ବୋଲି ଆଉ କେହି ଭାବିଲେ ନାହିଁ । ସମସ୍ତେ ତାଙ୍କ ପୂର୍ବ ଢଙ୍ଗ ପାଶୋରି ଦେଲେ ।

ଯଥା ସମୟରେ ତାଙ୍କ ପୁଅ ପାଇଁ ଗୋଟିଏ ସମ୍ଭ୍ରାନ୍ତ ପରିବାରରୁ କନ୍ୟାଟିଏ ଯୋଗାଡ଼ ହେଲା ।





# ଶିବ ପୁରାଣ

ଅନେକ ଦିନ ପରେ ନାରଦ ମୁନି ଯାଇ ଜଳନ୍ଧରର ରାଜ୍ୟରେ ପହଞ୍ଚିଲେ । ଜଳନ୍ଧରକୁ ମାରିବା ପାଇଁ ଏଣେ ଶିବ ଓ ବିଷ୍ଣୁ ଅପେକ୍ଷା କରିଥା'ନ୍ତି । ଜଳନ୍ଧର ସହିତ ଦେଖା ହେବା ମାତ୍ରେ ନାରଦ କହିଲେ, "ବତ୍ସ, ଜଳନ୍ଧର, ତୁ ତ ରାଜ୍ୟ ଶାସନ କରି ଆନନ୍ଦରେ ଅଛୁ । କିନ୍ତୁ ଜାଣୁ କି ଶିବ ଓ ବିଷ୍ଣୁ ଦୁହେଁ ତୋତେ ହିମାଳୟସ୍ଥ ମାନସରୋବରରେ ଅପେକ୍ଷା କରୁଛନ୍ତି ? ସୁଯୋଗ ପାଇବା ମାତ୍ରେ ସେମାନେ ତୋତେ ବଧ କରିବେ ।"

ନାରଦଙ୍କ କଥା ଶୁଣିବା ମାତ୍ରେ ସେ ସେଠାକୁ ଯାଇ ପାଣିରେ ବୁଡ଼ି ସେମାନଙ୍କୁ ଖୋଜିଲା । ଏକଥା ଆଗରୁ ଜାଣିପାରି ବିଷ୍ଣୁ ଓ ଶିବ ପାଣି ଭିତରୁ ଉପରକୁ ଉଠି ଆସି ଜଳନ୍ଧରକୁ ଅପେକ୍ଷା କରି ରହିଲେ । ଶିବ ଓ ବିଷ୍ଣୁ ଦୁହେଁ ଦୁହିଁଙ୍କ ଆୟୁଧ ବଦଳ କରି ଧରିଲେ । ଜଳନ୍ଧର ସମଗ୍ର ସରୋବରରେ ସେମାନଙ୍କୁ ଖୋଜି ନ ପାଇ କୂଳକୁ ଆସିଲା । ସେଠାରେ ସେମାନଙ୍କୁ ଦେଖି ଖୁବ୍ ଖୁସି ହୋଇ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲା । ଯୁଦ୍ଧ ହେଲା । ଶିବ ଓ ବିଷ୍ଣୁ ଜଳନ୍ଧରକୁ ମାରି ପକାଇଲେ । ତା'ର ମୃତ୍ୟୁରେ ତିନିଲୋକବାସୀ ଅତ୍ୟନ୍ତ ଖୁସି ହେଲେ ।

କଶ୍ୟପ ପ୍ରଜାପତିଙ୍କ ପୁତ୍ରମାନଙ୍କ ମଧ୍ୟରେ ବିପ୍ରଜିତ ନାମରେ ଏକ ଦାନବ ଥାଏ । ବିପ୍ରଜିତର ଦମ୍ଭ ନାମକ ଏକ ପୁତ୍ର ଥାଏ ।

୧୧. ଶଂଖଚୂଡ଼ର ଶାସନ



ସେ ଥାଏ ବିଷ୍ଣୁଭକ୍ତ । ତା'ର ବହୁତ ଦିନ ଧରି କିନ୍ତୁ ସନ୍ତାନ ନ ଥାଏ । ପୁତ୍ରପ୍ରାପ୍ତି ପାଇଁ ସେ ବଦ୍ରିକାଶ୍ରମକୁ ଯାଇ ଶ୍ରୀବିଷ୍ଣୁଙ୍କୁ ଦୀର୍ଘ ସମୟ ଧରି ତପସ୍ୟା କଲା । ଅବଶେଷରେ ଶ୍ରୀବିଷ୍ଣୁ ଆବିର୍ଭାବ ହୋଇ ଦମ୍ଭକୁ ବର ମାଗିବାକୁ କହିଲେ ।

ଦମ୍ଭ ଶ୍ରୀବିଷ୍ଣୁଙ୍କୁ କହିଲା, "ପ୍ରଭୋ, ମୋତେ କୃପାକରି ଏପରି ଏକ ପୁତ୍ର ଦିଅନ୍ତୁ ଯିଏ ବଳ, ଶୌର୍ଯ୍ୟ, ସାହସ ଓ ପରାକ୍ରମରେ ଆପଣଙ୍କର ସମାନ ହେବ । ସମଗ୍ର ତ୍ରିଲୋକ ତା'ର ବଶ୍ୟତା ସ୍ୱୀକାର କରିବେ । ସେ କାହା ଦ୍ୱାରା ପରାଜିତ ହେବ ନାହିଁ ତଥା ଆପଣଙ୍କ ପ୍ରତି ତା'ର ଅଖଣ୍ଡ ଭକ୍ତି ରହିବ ।"

ଶ୍ରୀବିଷ୍ଣୁ ଦମ୍ଭର ଇଚ୍ଛା ଅନୁସାରେ ବର ଦେଲେ । ଦମ୍ଭ ଘରକୁ ଫେରି ଆସି ସମସ୍ତ ବୃତ୍ତାନ୍ତ ନିଜ ପତ୍ନୀକୁ କହିଲା । ଯଥା ସମୟରେ ଏକ ପୁତ୍ର ସନ୍ତାନ ଜନ୍ମ ନେଲା । ତା'ର ନାମକରଣ କରାଗଲା ଶଙ୍ଖଚୂଡ଼ । ତାକୁ ଅତି ଆଦରଯତ୍ନରେ ମାତାପିତା ଲାଳନ ପାଳନ କଲେ ।

ସେ ବଡ଼ ହେବାରୁ ଶୁକ୍ରାଚାର୍ଯ୍ୟଙ୍କଠାରୁ ସମସ୍ତ ବିଦ୍ୟା ଅନାୟାସରେ ଶିକ୍ଷା କଲା । ବିଦ୍ୟାଶିକ୍ଷା ଅନ୍ତେ ଘରକୁ ଫେରିଯାଇ, ପିତାମାତାଙ୍କ ଅନୁମତି ନେଇ ସେ ବିନ୍ଧ୍ୟାଚଳରେ ପହଞ୍ଚିଲା ଓ ବ୍ରହ୍ମାଙ୍କୁ ଘୋର ତପସ୍ୟା କଲା । ସେ ଅନ୍ନଜଳ ତ୍ୟାଗ କରି ଏକ ପାଦରେ ଦଣ୍ଡାୟମାନ ହୋଇ ତପସ୍ୟା କରିବାକୁ ଲାଗିଲା । ତା'ର ଭକ୍ତି ଓ ତପସ୍ୟାରେ ବ୍ରହ୍ମା ସନ୍ତୁଷ୍ଟ ହେଲେ; ସେ ତା'ର ସମ୍ମୁଖରେ ଆବିର୍ଭୂତ ହୋଇ କହିଲେ, "ବତ୍ସ, ତୋର ତପସ୍ୟାରେ ମୁଁ ସନ୍ତୁଷ୍ଟ । କ'ଣ ବର ଚାହୁଁଛୁ କହ ।"

"ଭଗବାନ୍, ଦେବ, ରାକ୍ଷସ, ନାଗ ଓ ମାନବଗଣଙ୍କୁ ପରାସ୍ତ କରିବା ପାଇଁ ମୋତେ ବଳ ଓ ପରାକ୍ରମ ଦିଅନ୍ତୁ । ମୁଁ ତ୍ରିଲୋକ ଉପରେ ଯେପରି ବିଜୟପ୍ରାପ୍ତ କରିପାରିବି ଓ ଜୀବନକୁ ଭଲ ଭାବରେ ଉପଭୋଗ କରିପାରିବି ।" ଶଙ୍ଖଚୂଡ଼ କହିଲା ।

ବ୍ରହ୍ମଦେବ ଶଙ୍ଖଚୂଡ଼ର ଦାବି ଅନୁସାରେ ତାକୁ ବରଦାନ କରି କହିଲେ, "ବତ୍ସ,



ତୋର ମନୋକାମନା ତ ନିଶ୍ଚୟ ପୂର୍ଣ୍ଣ ହେବ । କିନ୍ତୁ ତୋର ଜୀବନର ଭଲ ମନ୍ଦ ନିର୍ଭର କରୁଛି ଯାହା ଉପରେ ସେ ତୋର ସ୍ତ୍ରୀ । ତୁ ବଦ୍ରିକାଶ୍ରମକୁ ଯାଇ ଦେଖିବୁ ସେଠାରେ ତୁଳସୀ ନାମରେ ଏକ ସୁନ୍ଦରୀ କନ୍ୟା ତପସ୍ୟାରେ ମଗ୍ନ ଅଛି । ତାକୁ ତୁ ବିବାହ କରି ସୁଖରେ ରହ । କାରଣ ତୁ ତାକୁ ବିବାହ କରିବା ବିଧିନିର୍ଦ୍ଦିଷ୍ଟ ।"

ବ୍ରହ୍ମଦେବଙ୍କ ଦ୍ୱାରା ବରପ୍ରାପ୍ତ କରି ତାଙ୍କ ଆଦେଶ ଅନୁସାରେ ବଦ୍ରିକାଶ୍ରମରେ ପହଞ୍ଚି ଶଙ୍ଖଚୂଡ଼ ଦେଖିଲା ତୁଳସୀ ନାମକ ଏକ ତପସ୍ୱିନୀ କନ୍ୟା ସେଠାରେ ଅଛି । ତାହାର ସୌନ୍ଦର୍ଯ୍ୟ ମଧ୍ୟ ଅତୁଳନୀୟ ।

ଶଙ୍ଖଚୂଡ଼ ତୁଳସୀ ପାଖକୁ ଯାଇ କହିଲା, "ଦେବୀ, ତୁମର ନିବାସ କେଉଁଠି ? ତୁମେ ଏ ଘୋର ଜଙ୍ଗଲରେ କାହିଁକି ବା ଏକାକିନୀ ବାସ କରୁଛ ?"

ତୁଳସୀ କହିଲା, "ମୁଁ ରାଜା ଧର୍ମଧ୍ୱଜଙ୍କର କନ୍ୟା । ମୋ ନାମ ତୁଳସୀ । ମୋର ଇଚ୍ଛା ମୋର ଭାବି ପତି ଜଣେ ମହାବୀର ହୋଇଥିବ ଓ ମୋର ପତିବ୍ରତା ଧର୍ମ ସମ୍ବର୍ଦ୍ଧନ ପାଇଁ ଜାଜ୍ୱଲ୍ୟମାନ ହୋଇ ରହିବ । ସେଇ ଆକାଂକ୍ଷା ନେଇ ମୁଁ ତପସ୍ୟା କରୁଛି । କିନ୍ତୁ ଆପଣ କିଏ ? କେଉଁଠୁ ହଠାତ୍ ଆସି ପହଞ୍ଚିଲେ ।"

"ମୁଁ ହେଉଛି ଦାନବରାଜ ଦମ୍ଭଙ୍କ ପୁତ୍ର । ମୋ ନାମ ଶଙ୍ଖଚୂଡ଼ । ମୁଁ ବ୍ରହ୍ମାଙ୍କୁ ତପସ୍ୟା କରି ତ୍ରିଲୋକ ଉପରେ ବିଜୟ ଲାଭ କରିବାର ବର ପାଇଛି । ବ୍ରହ୍ମାହିଁ ମୋତେ ଆଦେଶ ଦେଇଛନ୍ତି ତୁମକୁ ବିବାହ କରିବାକୁ । ସେଥିପାଇଁ ମୁଁ ଏଠାକୁ ଆସିଛି ।" ଶଙ୍ଖଚୂଡ଼ କହିଲା ।

ତୁଳସୀ ଏକଥାରେ ସମ୍ମତ ହେବା ମାତ୍ରେ ଶଙ୍ଖଚୂଡ଼ ରାଜ୍ୟକୁ ଫେରି ପିତାଙ୍କୁ ଏ ଖବର ଜଣାଇଲା । ଦୁଇ ରାଜ୍ୟରେ ମହାଉତ୍ସବ ହେଲା । ଦୁହିଁଙ୍କର ବିବାହ ହେଲା । ପରେ ପରେ ଦମ୍ଭ ଶୁକ୍ରାଚାର୍ଯ୍ୟଙ୍କ ସହିତ ପରାମର୍ଶ କରି ଅନତିବିଳମ୍ବେ ପୁତ୍ର ଶଙ୍ଖଚୂଡ଼ର ଅଭିଷେକ କରାଇଲା ।



ଶଙ୍ଖଚୂଡ଼ ପିତାଙ୍କ ପରାମର୍ଶ ଓ ଶୁକ୍ରାଚାର୍ଯ୍ୟଙ୍କ ଉପଦେଶ ସହିତ ରାଜ୍ୟ ଶାସନ କରି ଖୁବ୍ ସୁନାମ ଅର୍ଜନ କଲା । ସେହି ସମୟରେ ରାଜ୍ୟରେ ସୁଖ ସମୃଦ୍ଧି ବୃଦ୍ଧି ହେବାରେ ଲାଗିଲା । ଦିନେ କେତେକ ମୁଖ୍ୟ ଅସୁର ଓ ଶୁକ୍ରାଚାର୍ଯ୍ୟ ଶଙ୍ଖଚୂଡ଼ଙ୍କୁ ଦେଖା କରି କହିଲେ, "ରାଜନ୍, ଇନ୍ଦ୍ରଦେବ ଓ ଅନ୍ୟାନ୍ୟ ଦେବତାମାନେ ଆମମାନଙ୍କ ଉପରେ ବହୁବାର ଆକ୍ରମଣ କରି ଅନେକ ଅତ୍ୟାଚାର କରିଛନ୍ତି । ତେଣୁ ତାହାର ପ୍ରତିଶୋଧ କେବଳ ଆପଣ ନେଇ ପାରିବେ ବୋଲି ଆମେ ଆପଣଙ୍କୁ ଅନୁରୋଧ କରୁଛୁ । ପ୍ରଥମେ ସ୍ୱର୍ଗ ଉପରେ ବିଜୟ ଲାଭ କରନ୍ତୁ ।"

ଶଙ୍ଖଚୂଡ଼ ସେମାନଙ୍କ କଥାରେ ସମ୍ମତ ହୋଇ ଶୁକ୍ରାଚାର୍ଯ୍ୟଙ୍କୁ ଯୁଦ୍ଧଯାତ୍ରା ପାଇଁ ଏକ ଶୁଭ ମୁହୂର୍ତ୍ତ ଦେଖିବାକୁ କହିଲା । ଶୁଭ ମୁହୂର୍ତ୍ତରେ ଶଙ୍ଖଚୂଡ଼ ସୈନ୍ୟମାନଙ୍କୁ ନେଇ ସ୍ୱର୍ଗପୁର ଆକ୍ରମଣ କଲା । ଇତିମଧ୍ୟରେ ଏ ଖବର ପାଇ ଇନ୍ଦ୍ର ସ୍ୱୟଂ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ ଓ ଦେବସେନାପତି କାର୍ତ୍ତିକେୟଙ୍କୁ ଯୁଦ୍ଧ ଦ୍ୱାର ଜଗାଇ ପଠାଇଲେ । ଗୁଳଣ ଦିନ ଧରି ଦେବ ଦାନବ ମଧ୍ୟରେ ଯୁଦ୍ଧ ଚାଲିଲା । କିନ୍ତୁ ଶେଷରେ ଦେଖାଗଲା କ୍ରମେ ଦେବତାମାନେ ଦୁର୍ବଳ ହୋଇ ପଡ଼ିଲେ । ଏସବୁ ଦେଖି ଇନ୍ଦ୍ର ଭାବିଲେ ଦେବତାଙ୍କର ପରାଜୟ ସୁନିଶ୍ଚିତ । ତେଣୁ ସେ ଶଙ୍ଖଚୂଡ଼ ନିକଟକୁ ଯାଇ କହିଲେ, "ଶଙ୍ଖଚୂଡ଼, ମୁଁ ଜାଣେ ତୁମେ ବ୍ରହ୍ମାଙ୍କ ବର ଯୋଗୁ ଅତ୍ୟନ୍ତ ବଳଶାଳୀ ହୋଇଛ ପୁଣି କଶ୍ୟପଙ୍କ ବଂଶଜ । ତେଣୁ ଅଯଥା ଯୁଦ୍ଧ କରି ସୈନ୍ୟ ମାରିବା ଅପେକ୍ଷା ତୁମେ ବରଂ ସ୍ୱର୍ଗପୁରକୁ ଅଧିକାର କରି ଶାସନ କର । ଆମେମାନେ ତୁମକୁ ସାହାଯ୍ୟ କରିବୁ ।"

ଶଙ୍ଖଚୂଡ଼ ଖୁସି ହୋଇ କହିଲା, "ଠିକ୍ ଅଛି ତମେହିଁ ମୋର ପ୍ରତିନିଧି ହୋଇ ସ୍ୱର୍ଗରେ ଶାସନ କର ।"

ତା'ପରେ ସେ ମର୍ତ୍ତ୍ୟ ଲୋକ ଓ ପାତାଳ ଲୋକ ଜୟ କରିବା ପରେ ନିଜର ରାଜଧାନୀ ଶୋଣିତପୁର ଫେରିଯାଇ ସେଠାରେ ଥାଇ ତିନିଲୋକକୁ ଶାସନ କଲା ।

ଇନ୍ଦ୍ରଙ୍କୁ ଋଷିମୁନିମାନେ ଯଜ୍ଞଭାଗ ଦେଉ-ଥିବାରୁ ଶଙ୍ଖଚୂଡ଼ ତା'ର ସୈନ୍ୟମାନଙ୍କୁ କହିଲା, "ସବୁ ଋଷିମୁନିମାନଙ୍କୁ ଆଦେଶ କର ମୋତେ ଯଜ୍ଞଭାଗ ଦେବାକୁ । ଯଦି ସେମାନେ ନ ମାନନ୍ତି, ତାହାହେଲେ ତାଙ୍କର ଯଜ୍ଞ ଧ୍ୱଂସ କର ।"

ସୈନ୍ୟମାନଙ୍କ ଦ୍ୱାରା ଅତ୍ୟାଚାରିତ ଋଷିମୁନିଗଣ ବିଷ୍ଣୁଙ୍କ ପାଖକୁ ଯାଇ କହିଲେ, "ଭଗବାନ୍, ଆମେ ଶଙ୍ଖଚୂଡ଼ ଦ୍ୱାରା ଅତ୍ୟାଚାରିତ, ଆପଣ ତାକୁ ବଧ କରି ଆମକୁ ରକ୍ଷା କରନ୍ତୁ ।"

ଶ୍ରୀବିଷ୍ଣୁ କହିଲେ, "ଶଙ୍ଖଚୂଡ଼ ମୋର ଅଂଶ ନେଇ ଜନ୍ମ ନେଇଛି ଓ ତୁଳସୀ ଲକ୍ଷ୍ମୀଙ୍କ ଅଂଶରେ ଜନ୍ମ ନେଇଛି । ତେଣୁ ମୁଁ ସେମାନଙ୍କୁ ବଧ କରିପାରିବି ନାହିଁ । ତମେ ଶିବଙ୍କ ପାଖକୁ ଯାଅ ।"

ଋଷିମୁନିଗଣ ଶିବଙ୍କ ପାଖକୁ ଯାଇ ସବୁକଥା କହିଲେ । ଶିବ ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ, "ମୁଁ ଅବିଳମ୍ବେ ଶଙ୍ଖଚୂଡ଼ ଓ ଅନ୍ୟ ଅସୁରମାନଙ୍କୁ ବଧ କରିବି । ତୁମେମାନେ ଯାଅ ।"

ନାରଦ ଏଇ ଖବର ନେଇ ଧନେ ଶଙ୍ଖଚୂଡ଼ ପାଖରେ ପହଞ୍ଚି କହିଲେ, "ଶଙ୍ଖଚୂଡ଼ ତୁ ଆରାମରେ ବସିଛୁ । ତେଣେ ଋଷିମୁନିଙ୍କ କଷ୍ଟ ଦେଖି ଶିବ କଥା ଦେଇଛନ୍ତି ଯେ ଅବିଳମ୍ବେ ତୋର ରାଜ୍ୟ ଆକ୍ରମଣ କରି ତୋତେ ବଧ କରିବେ । ତେଣୁ ସେ ତୋତେ ଆକ୍ରମଣ କରିବା ଆଗରୁ ତୁ ସୈନ୍ୟ ନେଇ କୈଳାସ ଆକ୍ରମଣ କର ।"

ନାରଦଙ୍କ ପରାମର୍ଶ ଅନୁସାରେ ସେ ନିଜର ସୈନ୍ୟସାମନ୍ତ ଧରି କୈଳାସ ଆକ୍ରମଣ କଲା । ଶିବ ଏହା ଦେଖି କ୍ରୋଧାନ୍ୱିତ ହୋଇ କୁମାରଗଣଙ୍କୁ ଓ ଭଦ୍ରକାଳୀ ଆଦି ଦେବା-ମାନଙ୍କୁ ଧରି ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଇତମଧ୍ୟରେ ଦୁଇ ପକ୍ଷର ସୈନ୍ୟମାନଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହୋଇ ସାରିଥାଏ ।





# ଷଡ଼ଯନ୍ତ୍ରର ସୁଫଳ

ଅମିରୁଦ୍ଦୌଲ ଥିଲେ ଆଲମ ଶହରର ସୁଲତାନ । ତାଙ୍କ ଦରବାରରେ ଥିଲେ ଦଶଜଣ ଉଜୀର୍ । କିନ୍ତୁ ସେମାନେ ସଦାବେଳେ ସୁଲତାନଙ୍କ ଅଜାଣତରେ ଲୋକଙ୍କ ଉପରେ ଅତ୍ୟାଚାର କରି ଅନେକ ଧନସମ୍ପତ୍ତି ଠକି ଖାଉଥିଲେ । ଅବଶେଷରେ ପଡ଼ୋଶୀ ରାଜ୍ୟର ସୁଲତାନ ଯେତେବେଳେ ରାଜ୍ୟ ଆକ୍ରମଣ କଲେ, ସେତେବେଳେ ଏଇ ବିଶ୍ୱାସଘାତକ ଉଜୀରମାନେ ଗୁପ୍ତରେ ପଡ଼ୋଶୀ ରାଜ୍ୟକୁ ସାହାଯ୍ୟ କଲେ । ତେଣୁ ଅନାୟାସରେ ପଡ଼ୋଶୀ ରାଜ୍ୟର ସୁଲତାନ ଅମିରୁଦ୍ଦୌଲଙ୍କ ଦୁର୍ଗ ଦଖଲ କଲେ । ସେଇ ଗୋଳମାଳ ଭିତରେ ସୁଲତାନ୍ ଅମିରୁଦ୍ଦୌଲ ନିଜର ସ୍ତ୍ରୀ ଓ ଶିଶୁପୁତ୍ରକୁ ଧରି ଏକ ଗୁପ୍ତଦ୍ୱାର ବାଟ ଦେଇ ଦୁର୍ଗ ମଧ୍ୟରେ ଥିବା ଶତ୍ରୁମାନଙ୍କ କବଳରୁ ମୁକ୍ତ ହୋଇ ପଳାୟନ କଲେ ।

ବାହାରେ ବଣ ରାସ୍ତାରେ ଯାଇ ଯାଇ ଅନେକ ଦୂର ପରେ ହଠାତ୍ ସୁଲତାନ୍ କୌଣସି ଶବ୍ଦ ଶୁଣି ପାରିଲେ । କାନପାରି ଜାଣିଲେ ଅଦୂରରେ ଅନେକ ଲୋକ ଘୋଡ଼ାରେ ବସି ଆସୁଛନ୍ତି । ଶତ୍ରୁଦଳର ଲୋକ ଆସୁଛନ୍ତି ଭାବି ସେ ତରବରରେ ଶିଶୁପୁତ୍ରକୁ ରାସ୍ତାକଡ଼ର ଗୋଟିଏ ଗଛମୂଳେ ଶୁଆଇ ଦେଇ ପାଖ ପାହାଡ଼ ଖୋଲରେ ଯାଇ ଲୁଚି ରହିଲେ । ରାଣୀ ପୁଅ ପାଇଁ ଦୁଃଖ କରିବାରୁ ସୁଲତାନ୍ କହିଲେ, "ଦେଖ ଆମ ପାଖରେ ପୁଅ ଥିଲେ ତା'ର କାନ୍ଦ ଶତ୍ରୁଦଳକୁ ବା ଡାକୁଦଳକୁ ଆକର୍ଷଣ କରିବ । କିନ୍ତୁ ଛୋଟ ପିଲାଟାକୁ ଦେଖି କେହି ହୁଏତ ମାରିବେ ନାହିଁ ।"

କିଛି ସମୟ ପରେ ଘୋଡ଼ସବାର ଦଳ ଆସିଲେ । ସେମାନେ ସୈନିକ ନ ଥିଲେ, ଥିଲେ ଏକ କୁଖ୍ୟାତ ଡାକୁଦଳ । ଦଳର



ମୁଖ୍ୟ ଏଇ ଛୋଟ ଶିଶୁଟିକୁ ନିର୍ଜନ ଜଙ୍ଗଲ ପ୍ରଦେଶରେ ଦେଖି ଖୁବ୍ ଖୁସି ହୋଇଗଲା । ତା'ପରେ ଛୁଆଟିକୁ ଉଠାଇ ନେଇ ସେମାନେ ନିଜ ରାସ୍ତାରେ ଚାଲିଗଲେ ।

ଛୁଆକୁ ହରାଇ ବେଗମ କାନ୍ଦିବାରେ ଲାଗିଲେ । ସୁଲତାନ୍ ବେଗମଙ୍କୁ ବୁଝାଇବାକୁ ଯାଇ କହିଲେ, "କାନ୍ଦୁଛ କାହିଁକି ?" କେହି କାହା ଜୀବନର ମାଲିକ ନୁହେଁ । ଆମର ଏବେ ଯେଉଁପରି ଅବସ୍ଥା ହୋଇଛି ଆମେ ଯେ କେତେଦିନ ବଞ୍ଚିବା ବା ରାସ୍ତାରେ ମରିବା କିଛି ଜଣାନାହିଁ । ଯଦି ସେମାନେ ଛୁଆକୁ ନେଇଗଲେ ଅନ୍ତତଃ ସେ ତ ବଞ୍ଚିବାର କିଛି ସମ୍ଭାବନା ଅଛି । ଆସ ଆମେ ଦୁହେଁ ଆଲ୍ଲାଙ୍କୁ ପ୍ରାର୍ଥନା କରିବା, ଯେପରି ଆମ ପୁଅର ଦୀର୍ଘଜୀବନ ହେଉ ଓ ପରେ ଆମ ସହିତ ମିଳନ ହେଉ ।"

ଦୁହେଁ ପ୍ରାର୍ଥନା କରି ସାରିବା ପରେ ଦୀର୍ଘ ପଥ ଅତିକ୍ରମ କରି ଅନେକ ଦିନ ପରେ କୌଣସି ଏକ ବନ୍ଧୁରାଜାଙ୍କ ରାଜ୍ୟରେ ପହଞ୍ଚିଲେ ଓ ସେଠାରେ ଆଶ୍ରୟ ନେଲେ । ସେ ରାଜା ଥିଲେ ଶକ୍ତିଶାଳୀ । ସେଠାରେ ସେମାନେ ଅନେକ ବର୍ଷ ରହିବା ପରେ ସେହି ରାଜାଙ୍କର ସୈନ୍ୟସାମନ୍ତ ଧରି ଦିନେ ଶତ୍ରୁକବଳିତ ନିଜ ରାଜ୍ୟକୁ ଆକ୍ରମଣ କଲେ । ଯୁଦ୍ଧ ହେଲା । ସୁଲତାନ୍ ବିଜୟ ଲାଭ କରି ନିଜ ରାଜ୍ୟ ଫେରି ପାଇଲେ ଓ ବେଗମଙ୍କ ସହିତ ସେ ଆନନ୍ଦରେ ରହିଲେ ।

କିଛି ଦିନ ଉତ୍ତାରୁ ଥରେ ଏକ ବଡ଼ ଡକାୟତ ଦଳ ଧରା ପଡିଲେ । ସେମାନଙ୍କର ଆଗରୁ ଅନେକ ଅସାମାଜିକ କାମ ସକାଶେ ବଦନାମ ଥିଲା । ଆଉ କେହି ତାଙ୍କୁ ଧରି ପାରୁ ନଥିଲେ । ଏବେ ସେମାନେ ଧରା ପଡିବାରୁ ସୁଲତାନ୍ ସମସ୍ତିଙ୍କୁ ମୃତ୍ୟୁ ଦଣ୍ଡ ଆଦେଶ ଦେଲେ ।

ପରଦିନ ମୃତ୍ୟୁଦଣ୍ଡ ଦେବା ପୂର୍ବରୁ ରାଜା ସବୁ ବନ୍ଦୀମାନଙ୍କୁ ଦେଖିବାକୁ ଗଲେ । ସେଠାରେ ଜଣେ ଯୁବକ ଡ଼ାକୁର ଚେହେରା ଓ ବ୍ୟବହାରରେ ଅତ୍ୟନ୍ତ ପ୍ରିତ ହୋଇ ତାକୁ ସେ ମୃତ୍ୟୁଦଣ୍ଡରୁ ଅବ୍ୟାହତି ଦେଲେ ।



ପରଦିନ ତାକୁ ନିକଟକୁ ଡାକି ପଚାରିଲେ, "ତୋର ନାମ କ'ଣ? ତୁ ତ ଡାକୁ ପରି ଦେଖା ଯାଉନାହୁଁ।"

"ମୁଁ ଡାକୁମାନଙ୍କ ସରଦାରଙ୍କ ପୁଅ। ମୋର ନାମ ସଲିମ୍।" ଯୁବକ କହିଲା।

"ତୁ ଏସବୁ ବାଜେ କାମ ଆଉ କେବେ କରିବୁ ନାହିଁ ମୁଁ ତୋତେ ଦରବାରରେ କାମ ଦେବି। ରାଜି ଅଛୁ ତ?" ସୁଲତାନ୍ କହିଲେ।

"ହଜୁର୍, ଖୁସିରେ ମୁଁ ଚାକିରି କରିବି ଏବଂ ଜୀବନରେ କେବେ ମଧ୍ୟ ଚୋରି ଡକାୟତି କରିବି ନାହିଁ।" ସଲିମ୍ କହିଲା।

ସେହିଦିନ ସୁଲତାନ୍ ତାକୁ ଦରବାରରେ ଚାକିରି ଦେଲେ। ସେ ଏତେ କୁଶଳତାର ସହିତ ଓ ବିଶ୍ୱାସର ସହିତ କାମ କଲା ଯେ ସୁଲତାନ୍ ତା' ଉପରେ ଖୁସି ହୋଇ କିଛିଦିନ ପରେ ତାକୁ ଅଧିକା କାର୍ଯ୍ୟଭାର ଦେଲେ। ଏହିପରି କ୍ରମେ ବଢ଼ି ବଢ଼ି ଦିନେ ସେ ସୁଲତାନ୍‌ଙ୍କର କୋଷାଧ୍ୟକ୍ଷ ହେଲା। ଅବସ୍ଥା ଏପରି ଥିଲା ଯେ ସଲିମ୍‌ର ବିନା ଅନୁମତିରେ ରାଜକୋଷରୁ କେହି ଧନ ନେଇପାରୁ ନଥିଲେ। ଆଗରୁ ଉଜିରମାନେ ସବୁ ଧନରତ୍ନ ଚୋରେଇ ନେଇଥିଲେ। ତେଣୁ ସଲିମ୍‌ର ଉପସ୍ଥିତି ଉଜିରମାନଙ୍କ ପାଇଁ ଅସହ୍ୟ ହେଲା। ଉଜିରମାନେ ସମସ୍ତେ ମିଳି ତାକୁ ରାସ୍ତାରୁ ହଟାଇ ଦେବାକୁ ଷଡ଼ଯନ୍ତ୍ର କଲେ।

ଦିନେ ସୁଲତାନ୍ ସହରର ବାହାରକୁ ଯାଇଥା'ନ୍ତି। ଏପରି ସୁଯୋଗ ଦେଖି ଉଜିରମାନେ ସେମାନଙ୍କ ଷଡ଼ଯନ୍ତ୍ର କାର୍ଯ୍ୟକାରୀ କରାଇବାରେ ଲାଗି ପଡ଼ିଲେ। ସେମାନେ ମୁହଁରେ ମିଠାକଥା କହି ସଲିମ୍‌କୁ କିଛି ମଦ ପିଆଇଲେ ଓ ସେଥିରେ ଅଳ୍ପ ବିଷ ମଧ୍ୟ ମିଶାଇଥିଲେ। ଘୋର ନିଶା ଓ ବିଷର ପ୍ରଭାବରୁ ସେ ଅଚେତ୍ ହୋଇ ପଡ଼ିଲା। ସେହି ଅବସ୍ଥାରେ ଉଜିରମାନେ ତାକୁ ଟେକି ନେଇ ସୁଲତାନ୍‌ଙ୍କ ପଲଙ୍କରେ ଶୁଆଇ ଦେଲେ!

ରାତିରେ ସୁଲତାନ୍ କ୍ଲାନ୍ତ ହୋଇ ଘରକୁ ଫେରି ଦେଖିଲେ ତାଙ୍କ ଶଯ୍ୟାରେ କିଏ ଶୋଇଛି। ସେ ଆଶ୍ଚର୍ଯ୍ୟ ଯେତିକି ହେଲେ



ଉଜୀରମାନେ କହିଲେ, "ଏ ଅକ୍ଷମଣୀୟ ଅପରାଧ କରିବାକୁ ତା' ଛଡ଼ା ଆଉ ଦ୍ୱିତୀୟ ବ୍ୟକ୍ତି କିଏ ବା ସାହସ କରନ୍ତା ।"

ସଲୀମଙ୍କୁ ଦେଖି ସୁଲତାନଙ୍କର ମନରେ ଦୟା ହେଲା । କିନ୍ତୁ ସେ ନିଜେ ଦେଇଥିବା ମୃତ୍ୟୁଦଣ୍ଡ ପାଇଁ ଆଦେଶ ଆଉ ପ୍ରତ୍ୟାହାର କଲେ ନାହିଁ ।

ପରଦିନ ମୃତ୍ୟୁଦଣ୍ଡ ଦିଆ ହେବା କଥା । ସଲୀମଙ୍କୁ ବଧସ୍ଥଳୀକୁ ନିଆଗଲା । ରାଜ୍ୟସାରା ଲୋକ ଜମା ହୋଇଥା'ନ୍ତି । ଭିଡ଼ ଭିତରୁ ଜଣେ ବୃଦ୍ଧଲୋକ ବାହାରି ଆସି ସଲୀମଙ୍କୁ ଧରି କାନ୍ଦି କାନ୍ଦି କହିଲା, "ପୁଅ ତୁ ଏବେ ବି ବଞ୍ଚିଛୁ ? ମୁଁ ଭାବିଥିଲି କି ଅନ୍ୟ ଡାକୁଙ୍କ ସହିତ ତତେ ମଧ୍ୟ ମାରିଦିଆ ଯାଇଛି । କିନ୍ତୁ ହାୟ ହତଭାଗ୍ୟ ମୁଁ ତତେ ଏଇ ଅବସ୍ଥାରେ ଯାହା ଦେଖିଲି । ଏବେ କ'ଣ କରିବି ?"

ବୁଢ଼ାକୁ ସମସ୍ତେ ଡାକୁ ସରଦାର ବୋଲି ଚିହ୍ନିଲେ । ଉଜୀରମାନେ ବୁଢ଼ାକୁ ବନ୍ଦୀ କରି ସୁଲତାନଙ୍କୁ ଖବର ଦେଲେ । ସୁଲତାନ ନିଜେ ଆସି ବଧସ୍ଥଳରେ ପହଞ୍ଚିଲେ ।

ସୁଲତାନଙ୍କୁ ଦେଖିବା ମାତ୍ରେ ଡାକୁ ସର୍‌ଦାର ତାଙ୍କ ପାଦରେ ପଡ଼ି କହିଲା, "ହଜୁର୍ ମୁଁ ଡାକୁ । ମୋତେ ମାରି ମୋ ପୁଅକୁ ଛାଡ଼ିଦିଅ । ମୋ ପୁଅ ଜଣେ ସ୍ୱର୍ଗଦୂତ । ସେ ଦେବତା ପରି ବ୍ୟକ୍ତି । ତାକୁ ମାର ନାହିଁ ।"

ଲୋକଟାର ଔଦ୍ଧତ୍ୟରେ ସେତିକି କ୍ରୋଧାନ୍ୱିତ ହେଲେ । ସେ କହିଲେ ଏପରି କାମ ଯିଏ କରିଛି ତା'ର ମୃତ୍ୟୁଦଣ୍ଡ ସୁନିଶ୍ଚିତ ।

ଉଜୀରମାନେ କହିଲେ, "କିଏ ଆଉ କରିବ ? ଆପଣ ଯାହାକୁ ପ୍ରଶ୍ରୟ ଦେଇ ଉପରକୁ ତୋଳି ଧରିଛନ୍ତି ସେଇ ସଲୀମ୍ । ବୋଧେ ସେ ନିଜକୁ ସୁଲତାନ୍ ଭାବୁଛି । ନ ହେଲେ ଏପରି କାମ କରିବାକୁ ସାହସ ତା'ର କେଉଁଠୁ ଆସିଲା ।"

ସିପାହୀମାନେ ତାକୁ ଶେଯରୁ ଉଠାଇ ଠିଆ କରାଇଲେ ଓ କହିଲେ, "ହଜୁର ଅତ୍ୟଧିକ ମଦ୍ୟପାନ ହେତୁ ଏପରି ହୋଇଛି । କାରଣ ସେ ହୋସ୍‌ରେ ନାହିଁ ।"

"ଆହାହା; ସବୁ ବାପାମାନେ ନିଜ ପୁଅକୁ ଦେବତା ବୋଲି ଭାବନ୍ତି।" ଉଜୀରମାନେ ଥଟ୍ଟା କରି କହିଲେ।

"ହଜୁର ସେ ସ୍ୱର୍ଗର ଦେବତା ନ ହୋଇଥିଲେ ମୁଁ କିପରି ଏକ ଅପନ୍ତରା ସ୍ଥାନରେ ତାକୁ ପାଇଥା'ନ୍ତି। ସମସ୍ତେ ଭାବନ୍ତି ସଲିମ ମୋ ପୁଅ। କିନ୍ତୁ ମୁଁ ତାକୁ ଗୋଟିଏ ପାହାଡ଼ ପାଖରେ ଥିବା ଜଙ୍ଗଲ ଧାରରୁ ପାଇଥିଲି।" ସରଦାର୍ କହିଲା।

"ପାହାଡ଼ ପାଖରେ? ପୁଣି ଜଙ୍ଗଲ ଧାରରେ? କେବେ? କିପରି?" ସୁଲତାନ ନିଜର ହଜିଥିବା ପୁଅ କଥା ମନେ କରି ପଚାରିଲେ।

ଡାକୁ ସରଦାର କୋଡ଼ିଏ ବର୍ଷ ତଳର ଘଟଣା ବର୍ଣ୍ଣନା କରି କହିଲା, "ଇଏ ସେଇ ପୁଅ। ତାକୁ ମୁଁ ମୋ ନିଜ ପୁଅ ପରି ପାଳନ କରିଛି।"

ସୁଲତାନଙ୍କ ଆଖିରୁ ଆନନ୍ଦର ଅଶ୍ରୁ ବହିବାକୁ ଲାଗିଲା। ସେ ଜାଣିପାରିଲେ ସଲିମ ତାଙ୍କର ହଜିଲା ପୁଅ ବ୍ୟତୀତ ଆଉ କେହି ନୁହେଁ। ସୁଲତାନ ମହା ଆଡ଼ମ୍ବରରେ ପୁଅକୁ ଧରି ରାଜମହଲକୁ ଯାଇ ବେଗମ୍ଙ୍କୁ ସବୁ କହିଲେ। ରାଜ୍ୟସାରା ଆନନ୍ଦ ଉତ୍ସବ ଲାଗିଲା। ରାଜା କିନ୍ତୁ ଉଜୀର୍ ମାନଙ୍କ ଉପରେ ରାଗିଯାଇ ସୈନ୍ୟମାନଙ୍କୁ ଆଦେଶ ଦେଲେ ଉଜୀରମାନଙ୍କୁ ପାହାଡ଼ ଉପରୁ ଠେଲି ତଳେ ପକାଇ ମାରି ଦେବାକୁ।

କିନ୍ତୁ ସଲିମ କହିଲେ, "ହଜୁର୍ ସେମାନେ ଷଡ଼ଯନ୍ତ୍ର ନ କରିଥିଲେ ଆପଣ ମୋତେ ଚିହ୍ନି ନ ଥା'ନ୍ତେ। ମୁଁ ସବୁଦିନ ପାଇଁ ଅଜଣା ହୋଇଥା'ନ୍ତି। ସେମାନଙ୍କୁ କ୍ଷମା କରି ଦିଅନ୍ତୁ।"

"ଆଚ୍ଛା ଠିକ୍ ଅଛି। ସେମାନଙ୍କୁ ଆଜୀବନ କାରାଦଣ୍ଡ ଦିଆଯିବ।" ସୁଲତାନ୍ କହିଲେ।

ତା'ପରେ ସଲିମର ସହାୟତାରେ ସୁଲତାନ୍ ବହୁ ବର୍ଷ ଶାସନ କଲେ ଓ ଲୋକପ୍ରିୟତା ଅର୍ଜ୍ଜନ କଲେ କିନ୍ତୁ ସଲିମ ଥିଲା ସମସ୍ତଙ୍କର ଅତି ପ୍ରିୟପାତ୍ର।






(ପୂର୍ବ ସଂଖ୍ୟାରେ କାହାଣୀର ପ୍ରଥମାଂଶ ପ୍ରକାଶିତ)

ଯେତେବେଳେ ରାଜପୁତ୍ର ତିମିସୁଙ୍କୁ କୌଣସି ଉପାୟରେ ରାଜା କଥା କୁହାଇ ପାରିଲେ ନାହିଁ କି କୌଣସି ବିଷୟରେ ତାଙ୍କ ଭିତରେ ଆଗ୍ରହ ସଞ୍ଚାର କରିପାରିଲେ ନାହିଁ, ସେତେବେଳେ ରାଜା ଜ୍ୟୋତିଷଙ୍କୁ ଡକାଇଲେ ଓ ଧମକ ଦେଇ ପଚାରିଲେ : "ତମେ କହିଥିଲ ମୋ ପୁଅ ଜୀବନରେ କୌଣସି ଅଶୁଭ ଲକ୍ଷଣ ନାହିଁ । ବର୍ତ୍ତମାନ ଦେଖାଯାଉଛି ସେ ମୂକ, ବଧିର ଏବଂ ଖଳ୍ଳ । କିଛି ବୁଝିପାରେ ନାହିଁ । କୌଣସି ବିଷୟରେ ତା'ର ଆଗ୍ରହ ନାହିଁ । ସିଏ ପଥର ଭଳି ଅଥର୍ବ । ତମେ ସେଭଳି ଭୁଲ ଭବିଷ୍ୟତବାଣୀ କରିଥିଲ କପରି ?"

ଜ୍ୟୋତିଷ ଭୟଭୀତ ହୋଇ କହିଲେ, "ମହାରାଜ ! ଆଜି ଆପଣଙ୍କୁ ସତ କଥା କହୁଛି । ହେଲେ ମୋତେ ଆପଣ ଦଣ୍ଡ ଦେବେନାହିଁ ତ ?"

"ନା, ନିର୍ଭୟରେ କୁହ । ତମକୁ ଦଣ୍ଡ ଦେଇ କ'ଣ ହେବ ?" ରାଜା କହିଲେ ।

"ମହାରାଜ ! ଯେତେବେଳେ ରାଜପୁତ୍ର ଜନ୍ମ ହେଲେ, ସେତେବେଳେ ଆପଣ ଉତ୍ସବରେ ମାତିଥିଲେ । ରାଜଧାନୀର ସବୁ ଲୋକେ ସେତେବେଳେ ଖୁସି । ଆପଣଙ୍କର, ରାଣୀଙ୍କର ତଥା ନଗରବାସୀଙ୍କ ସେ ଉତ୍ସାହ ଭାଙ୍ଗିଦେବାକୁ ମୋର ମନ ବଳି ନାହିଁ । ତେଣୁ ମୁଁ ସତ୍ୟ ଗୋପନ କରିଥିଲି ।" ଜ୍ୟୋତିଷ କହିଲେ ।

"ଯେଉଁ ସତ୍ୟ ଗୋପନ କରିଥିଲ, ତାହା କ'ଣ ?" ରାଜା ପଚାରିଲେ ।

ଜ୍ୟୋତିଷ ତ ରାଜାଙ୍କଠାରୁ ଅଭୟ ପାଇଥିଲେ, ତେଣୁ କଣ୍ଠସ୍ୱର ନିମ୍ନ କରି କହିଲେ, "ମହାରାଜ ! ଆପଣଙ୍କ ପାଖରେ



ଜନ୍ମ ହୋଇଥିବା ଏ ପିଲା ଆପଣଙ୍କ ବିଖ୍ୟାତ ବଂଶର କଳଙ୍କ । ଏ ପିଲା ଆପଣଙ୍କ ପ୍ରତି ତଥା ମହାରାଣୀଙ୍କ ପ୍ରତି ଭୀଷଣ ଅଶୁଭ । ଆପଣ ଗୋଟାଏ କାମ କରନ୍ତୁ । ଆପଣଙ୍କର ଅନେକ ରଥ ଭିତରୁ ଯେଉଁ ଗୋଟିକ ଚଢ଼ି କୁଆଡ଼େ ଗଲେ କାମ ବ୍ୟର୍ଥ ହୁଏ, ଅର୍ଥାତ୍ ଯେଉଁ ରଥ ଅଶୁଭ, ସେହି ରଥରେ ପିଲାକୁ ବସାଇ, ଅଶୁଭ ଘୋଡ଼ା ଯୋଚି ପଶ୍ଚିମ ଦ୍ୱାର ଦେଇ ତାକୁ ଶ୍ମଶାନକୁ ପଠାଇ ଦିଅନ୍ତୁ । ସେଠାରେ ଗୋଟିଏ ଗାତ ଖୋଳି ପିଲାକୁ ତହିଁ ଭିତରକୁ ଠେଲି ଦେଇ ତାକୁ ପୋତି ଦିଆଯାଉ । ତାହାହେଲେ ଅଶୁଭ କଟିଯିବ ।”

ରାଜପୁତ୍ରଙ୍କର ଚାଲିଚଳଣ ଓ କଥା ନ କହିବା ଦେଖି ରାଜା ପୂର୍ବରୁ ବହୁତ ବିରକ୍ତ ଓ ଦୁଃଖିତ ହୋଇଥିଲେ । ଏବେ ଜ୍ୟୋତିଷର କଥାରେ ସେ ସଂପୂର୍ଣ୍ଣ ବିଶ୍ୱାସ କଲେ ଓ ସେହି ଅନୁସାରେ କାର୍ଯ୍ୟ କରିବେ ବୋଲି ମନେ ମନେ ସ୍ଥିର କଲେ ।

ଜ୍ୟୋତିଷର ଏକଥା ରାଣୀ ଅନ୍ତରାଳରୁ ଶୁଣୁଥିଲେ । ଜ୍ୟୋତିଷର କଥା ଯେ ରାଜାଙ୍କୁ ଭଲ ଭାବରେ ପ୍ରଭାବିତ କରିଛି ତାହା ସେ ଅନୁମାନ କରିନେଲେ ରାଜାଙ୍କ ମୁହଁର ଭାବ ଦେଖି । ପୁତ୍ରର ଆଶୁ ମୃତ୍ୟୁ କଥା ଭାବି ତାଙ୍କର ହୃଦୟ ଶତଧା ବିଦୀର୍ଣ୍ଣ ହେଲା । ନିଜର ଆଧାତ୍ମ ବୁଦ୍ଧି ବଳରେ କିନ୍ତୁ ରାଣୀ ଜାଣି ପାରିଥିଲେ ଯେ ତାଙ୍କ ପୁଅ ଜଣେ ଯୋଗଜନ୍ମା । ମୌନ ହୋଇ ରହିଲେ ମଧ୍ୟ ଏକ ମହାନ୍ ଆତ୍ମା ଯେ ତାଙ୍କ ପୁଅ ହୋଇ ଜନ୍ମ ନେଇଛି ସେ ବିଷୟରେ ସେ ନିଃସନ୍ଦେହ ଥିଲେ । ଏଭଳି ଏକ ଶାନ୍ତ ଓ କୋମଳ ବାଳକ ପ୍ରତି ଏ ଦଣ୍ଡ ଅନ୍ୟାୟ ହେବ । ପୁଣି ମା'ର ହୃଦୟ ଏକଥା କିପରି ସହିବ । ପୁଅକୁ ମୃତ୍ୟୁରୁ ରକ୍ଷା କରିବା ପାଇଁ ସେ ନାନା ଉପାୟ ଚିନ୍ତା କଲେ । ପୁଣି ଜ୍ୟୋତିଷ କଥା ଶୁଣିଛନ୍ତି ଓ ସେଥିପାଇଁ ପ୍ରତିକ୍ରିୟା ଦେଖାଉଛନ୍ତି ଶୁଣିଲେ ରାଜା ହୁଏତ ଅଧିକ ବିରକ୍ତ ହେବେ । ସେଥିପାଇଁ ସେ ପୁଅର ଦୀର୍ଘଜୀବନ ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ ଓ




ନୀରବରେ କାନ୍ଦିବାକୁ ଲାଗିଲେ। କିଛି ସମୟ ପରେ ସେ ଧୈର୍ଯ୍ୟ ଧରି ମନ ମଧ୍ୟରେ ନାନା ଚିନ୍ତା କରି ରାଜାଙ୍କର ଆଗମନକୁ ଅପେକ୍ଷା କରି ରହିଲେ।

ରାଜା ଯେତେବେଳେ ଅନ୍ତଃପୁରକୁ ଆସିଲେ, ରାଣୀ ନିଜ ଅଶ୍ରୁ ଗୋପନ କରି କହିଲେ, "ଆପଣ ଥରେ ମୋତେ ବର ଦେବେ ବୋଲି କହିଥିଲେ। ମୁଁ ତାହା ପରେ ମାଗିନେବି ବୋଲି କହିଥିଲି। ବର୍ତ୍ତମାନ ମୋତେ ସେ ବର ଦିଆଯାଉ।"

"କ'ଣ ମାଗୁଛ ମାଗ।" ରାଜା କହିଲେ।

"ମୋ ପୁଅ ଚେମିସ୍ୱକୁ ସିଂହାସନରେ ବସାନ୍ତୁ।" ରାଣୀ କହିଲେ।

"ପାଗଳ! ଏହା କେବେ ସମ୍ଭବ ହୋଇ ପାରେ?"

"ଆଜୀବନ ନ ହେଉ, ସାତବର୍ଷ ପାଇଁ ତାକୁ ରାଜା କରନ୍ତୁ।" ରାଣୀ ମିନତି କରି କହିଲେ।

ରାଜା ନିଜର ବାକ୍ୟ ରକ୍ଷା କରିବା ନିମନ୍ତେ ସାତଦିନ ପାଇଁ ଚେମିସ୍ୱଙ୍କୁ ରାଜା କରିବାକୁ ରାଜି ହେଲେ। ରାଣୀ ପୁଅକୁ ସୁନ୍ଦର ବେଶ ଓ ଅଳଙ୍କାରରେ ଭୂଷିତ କରି କହିଲେ, "ବାପା! ଯିଏ ଯାହା କହୁନା କାହିଁକି, ମୋର ବିଶ୍ୱାସ ତୁ ଜଣେ ଜ୍ଞାନୀ। ତୁ ଏଥର ମୋ କଥାମାନି ସ୍ୱାଭାବିକ ଭାବରେ ଚଳ। ସିଂହାସନରେ ବସି ପ୍ରଜାଙ୍କ ମଙ୍ଗଳ ପାଇଁ ରାଜ୍ୟ ଶାସନ କର।"

କିନ୍ତୁ ରାଜପୁତ୍ରଙ୍କ ବ୍ୟବହାରରେ କୌଣସି ପରିବର୍ତ୍ତନ ଦେଖାଗଲା ନାହିଁ।

ଦିନ ଗଡ଼ି ଚାଲିଲା। ରାଣୀ କାନ୍ଦି କାନ୍ଦି ଅସ୍ଥିର ହେଲେ। ସପ୍ତମ ଦିନ ସନ୍ଧ୍ୟାବେଳେ ରାଜା ତାଙ୍କର ଜଣେ ସାରଥୀକୁ ଯାହା କରିବାକୁ ହେବ କହିଦେଲେ। ସେ ସାରଥୀ ରାଜାଙ୍କ ଆଦେଶ ଯାହା ହେଲେ ବି ତାହା ପାଳନ କରୁଥାଏ।

ସକାଳେ ସାରଥୀ ରାଜପୁତ୍ରଙ୍କୁ ଟେକି ନେଇ ରଥରେ ବସାଇ ବାହାରିଗଲା। କିନ୍ତୁ ଭୁଲ କରି ପଶ୍ଚିମ ଦ୍ୱାର ବାଟେ ନ ଯାଇ ପୂର୍ବ ଦ୍ୱାର ବାଟେ ଗଲା ଏବଂ ଶ୍ମଶାନରେ ନ ପହଞ୍ଚି

ଗୋଟିଏ ସୁରମ୍ୟ ସ୍ଥାନରେ ପହଞ୍ଚିଲା । ରଥ ଠିଆ କରାଇ ସେ ଯାଇ ଗାତ ଖୋଳିବାକୁ ଲାଗିଲା ।

ରାଜପୁତ୍ର ଏତେଦିନ ପରେ ରାଜପ୍ରାସାଦରୁ ମୁକ୍ତି ପାଇ ସୁନ୍ଦର ପ୍ରକୃତି କୋଳରେ ଉତ୍ଫୁଲ୍ଲ ଅନୁଭବ କଲେ । ସେ ରଥରୁ ଓହ୍ଲାଇ ବୁଲାବୁଲି କଲେ ଓ ସାରଥୀ ପଛରେ ଠିଆ ହୋଇ ପଚାରିଲେ, "ଗାତ କାହିଁକି ଖୋଳୁଛ ?"

ସାରଥୀ ମୁଣ୍ଡ ନ ଟେକି କହିଲା, "ସେ କଥା ଆଉ କାହିଁକି ପଚାରୁଛ ! ମୋତେ ଗୋଟାଏ ଭୀଷଣ କାମ କରିବାକୁ ହେବ । ଅଥର୍ବ ଅଶୁଭ ରାଜପୁତ୍ରଙ୍କୁ ଏଠି ପୋତି ଦେବାକୁ ହେବ ।"

ରାଜପୁତ୍ର ହସିଲେ ଓ ପଚାରିଲେ, "ରାଜପୁତ୍ର ଅଥର୍ବ ଓ ଅଶୁଭ ବୋଲି ତମକୁ କିଏ କହିଲା ?"

ସାରଥୀ ଚମକି ପଡ଼ିଲା । ଯେଉଁ କଥା କାହାକୁ କହିବାର ନୁହେଁ, ତାହା ସେ କହି ପକାଇଛି ବୋଲି ଅନୁତାପ କରି ପଛକୁ ବୁଲି ଅନାଇଲା । ଯାହାଙ୍କୁ ଦେଖିଲା ସେ ରାଜପୁତ୍ର ଭଳି । କିନ୍ତୁ ରାଜପୁତ୍ର ତ ଏପରି ଭାବରେ ବୁଲିବାର ବା କଥା କହିବାର କେହି କେବେ ଦେଖି ନାହିଁ ! ସେ ପଛକୁ ଚାହିଁ ରଥକୁ ଅନାଇଲା । ସେଥିରେ କେହି ନଥିଲେ ।



ସାରଥୀର ବିକଳ ଅବସ୍ଥା ଦେଖି ରାଜପୁତ୍ର ହସିଲେ ଓ କହିଲେ, "ତମର ଭ୍ରମ ହୋଇ ନାହିଁ । ମୁଁ ହିଁ ରାଜପୁତ୍ର । କିନ୍ତୁ ତମେ ମୋତେ ପୋତିବା ଦରକାର ନାହିଁ । ମୁଁ ଆଉ ରାଜ ପ୍ରାସାଦକୁ ଫେରୁନାହିଁ କି କାହାର ପ୍ରତି ଅଶୁଭ ହେବାର ପ୍ରଶ୍ନ ଉଠୁ ନାହିଁ !"

ସାରଥୀ ଅନେକ ସମୟ ପର୍ଯ୍ୟନ୍ତ କଥା କହିପାରିଲା ନାହିଁ । ତା'ପରେ ରାଜପୁତ୍ରଙ୍କ ଗୋଡ଼ ତଳେ ପଡ଼ିଯାଇ କହିଲା, "ମହାତ୍ମା ! ଆପଣ ନଅରକୁ ଚାଲନ୍ତୁ ଓ ସିଂହାସନରେ ବସନ୍ତୁ ।"

"ନା ବାବୁ ! ପୂର୍ବ ଜନ୍ମରେ ଥରେ ରାଜା ହୋଇଥିଲି । ସେତେବେଳେ ଯାହା କରିଥିଲି,



ସେଥିପାଇଁ ମୋତେ ନର୍କ ଭୋଗ କରିବାକୁ ପଡ଼ୁଛି । ରାଜା ହେବି ନାହିଁ ବୋଲି ତ ଏତେ ଅଭିନୟ କଲି !" ରାଜପୁତ୍ରରୂପୀ ବୋଧିସତ୍ତ୍ୱ କହିଲେ ।

ଆପଣଙ୍କ କଥା ଶୁଣି ମୋ ଭିତରେ ବି ବୈରାଗ୍ୟର ଉଦୟ ହୋଇଛି । ମୋତେ ଆପଣ ସାଥିରେ ନିଅନ୍ତୁ ।" ସାରଥୀ କହିଲା ।

"ତମେ ରାଜାଙ୍କ ରଥ ନେଇ ଆସିଛ । ତାହା ନ ଫେରାଇ କିପରି ମୋ ସହ ଆସିବ ?" ରାଜପୁତ୍ର କହିଲେ ।

"ତେବେ ମୁଁ ରଥ ଫେରାଇ ଦେଇ ଆସିବା ଯାଏ ଆପଣ ଏଠାରେ ଅପେକ୍ଷା କରିବେ ତ ?" ସାରଥୀ ପ୍ରତିଶ୍ରୁତି ମାଗିଲା ।

ବୋଧିସତ୍ତ୍ୱ ସେଥିରେ ରାଜି ହେଲେ । ସାରଥୀ ଚାଲିଗଲା । ସେ ଖାଲି ରଥ ଧରି ଫେରିବାର ଦେଖି ରାଣୀ କାନ୍ଦି ଉଠିଲେ । କାରଣ ସେ ତ ଆଗରୁ ଶୁଣିଥା'ନ୍ତି ରାଜପୁତ୍ରଙ୍କୁ କି ଦଣ୍ଡ ଦିଆଯିବ । ସେ କଥା ଭାବି ସେ ହୃଦୟରେ ଅସହ୍ୟ ଯନ୍ତ୍ରଣା ଅନୁଭବ କଲେ, କାନ୍ଦି କାନ୍ଦି ତାଙ୍କର ଅବସ୍ଥା ଯେତେବେଳେ ଗୁରୁତର ହେଲା ସାରଥୀ ଆଉ ସହ୍ୟ କରି ପାରିଲା ନାହିଁ । ସେ ରାଣୀଙ୍କ ପାଖକୁ ଯାଇ କହିଲା, "ମା' ଆପଣ ଧୈର୍ଯ୍ୟ ଧରନ୍ତୁ, ଆପଣଙ୍କ ପୁଅ ଜଣେ ମହାପୁରୁଷ । ତାଙ୍କର କୌଣସି ଅନିଷ୍ଟ କେହି ମଧ୍ୟ କରିପାରିବେ ନାହିଁ । ମୁଁ ବା କି ଛାର । ସେ ହସୁଛନ୍ତି, କଥା କହୁଛନ୍ତି ଏବଂ ସଶରୀରେ ଅଛନ୍ତି । ଏବେ ରାଜାଙ୍କୁ କୁହନ୍ତୁ ସେ ସେହି ମହାଜ୍ଞାନୀ ରାଜପୁତ୍ରଙ୍କୁ ଯାଇ ଦେଖା କରନ୍ତୁ । ମୁଁ ସିନା ତାଙ୍କୁ ମାରିଦେବାକୁ ନେଇଥିଲି କିନ୍ତୁ ତାଙ୍କର ଦିବ୍ୟ ଐଶ୍ୱରିକ ପ୍ରଭାବ ମୋ ପରି ଅଧମ ମନରେ ମଧ୍ୟ ଦିବ୍ୟ ଭାବ ଆଣି ଦେଇଛି; ପ୍ରେମମୟ, ଜ୍ଞାନୀ ମହାପୁରୁଷ ସେ । କେଡ଼େ ବଡ଼ ପାପ କରିବାକୁ ମୁଁ ଯାଉଥିଲି । ତାଙ୍କରି ଦୟାରୁ ସେ ଭୟଙ୍କର ପାପରୁ ରକ୍ଷା ପାଇଲି । ଏବେ ରାଜାଙ୍କୁ ସବୁ କଥା କୁହନ୍ତୁ ଓ ଚାଲନ୍ତୁ ଦେଖିବେ ସେଇ ମହାନ୍ ପୁରୁଷଙ୍କୁ ।"

ରାଣୀ ଯାଇ ସଙ୍ଗେ ସଙ୍ଗେ ରାଜାଙ୍କୁ କହିଲେ । ରାଜାଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେ

ଓ ରାଣୀ ସେ ନିର୍ଜନ ସ୍ଥାନକୁ ଯିବାକୁ ପ୍ରସ୍ତୁତ ହେଲେ । ସଙ୍ଗେ ସଙ୍ଗେ ପାତ୍ର ମିତ୍ରମାନେ ମଧ୍ୟ ବାହାରି ପଡ଼ିଲେ ।

ସେମାନେ ଯିବା ବେଳକୁ ଇନ୍ଦ୍ରଙ୍କ ବରଦ ଅନୁସାରେ ବିଶ୍ୱକର୍ମା ବୋଧିସତ୍ତ୍ୱଙ୍କ ସକାଶେ ସେ ସ୍ଥାନରେ ଗୋଟିଏ ସ୍ୱର୍ଣ୍ଣାଭ କୁଟୀର ନିର୍ମାଣ କରି ଦେଇଥାନ୍ତି । ସେମାନେ ଦେଖିଲେ ସାରଥୀର କଥା ମିଛ ନୁହେଁ । ରାଜପୁତ୍ର ମୃଦୁ ହସି ବୁଲିବୁଲି କରୁଛନ୍ତି ।

ରାଜା ଯାଇ କହିଲେ, "ବାପା ! ନଅରକୁ ଚାଲ । ରାଜ୍ୟ ଭାର ତମକୁ ଦେଇ ମୁଁ ନିଶ୍ଚିନ୍ତ ହୁଏଁ ।"

"ନା, ମହାରାଜ ! ମୁଁ ବୈରାଗୀ । ରାଜ୍ୟ ଭାର ନେବି କିପରି ?" ବୋଧିସତ୍ତ୍ୱ ନମ୍ର ଭାବରେ କହିଲେ ।

"ବାପା ! ମୁଁ ବରଂ ବୈରାଗୀ ହୋଇ ଏଠାରେ ରହୁଛି । ତମେ ରାଜ୍ୟ ସମ୍ଭାଳ !" ରାଜା ପୁଣି କହିଲେ ।

"ଆପଣଙ୍କର ଇଚ୍ଛା ହେଲେ ଆପଣ ବୈରାଗୀ ହୋଇ ପାରନ୍ତି । କିନ୍ତୁ ଆଉ ଜଣେ ବୈରାଗୀକୁ ଆପଣ ସଂସାରୀ କରିବାକୁ କାହିଁକି ଚାହୁଁଛନ୍ତି ? ରାଜ୍ୟ ଭୋଗରେ ମୋତେ ତିଳେ ବି ସୁଖ ମିଳିବ ନାହିଁ । କୌଣସି କ୍ଷଣିକ ସୁଖ ସମ୍ପଦ ମୋତେ ସନ୍ତୋଷ ଦେଇ ପାରିବ ନାହିଁ । ଆପଣ ଯେପରି ମୂଳରୁ ରାଜା, ମୁଁ ସେହିପରି ମୂଳରୁ ବୈରାଗୀ ।" ବୋଧିସତ୍ତ୍ୱ କହିଲେ ।

ବୋଧିସତ୍ତ୍ୱଙ୍କ ବାଣୀ ରାଜା ଓ ଅମାତ୍ୟମାନେ ମୁଗ୍ଧ ହୋଇ ଶୁଣିଲେ । ଜୀବନ ପ୍ରତି ସେମାନଙ୍କ ଦୃଷ୍ଟିକୋଣ ବଦଳିଗଲା । ସେମାନେ ବୋଧିସତ୍ତ୍ୱଙ୍କ କଥାମାନ ଫେରିଗଲେ ସତ, କିନ୍ତୁ ସେମାନଙ୍କ ମନ ବୋଧିସତ୍ତ୍ୱଙ୍କ ପାଖରେହିଁ ସର୍ବଦା ରହିଲା । ସାରା ନଗରର ସମସ୍ତ ଲୋକେ ବାରମ୍ବାର ତାଙ୍କ ପାଖକୁ ଆସି ଉଭୟ ଜ୍ଞାନ ଓ ଶାନ୍ତି ଆହରଣ କରିବାକୁ ଲାଗିଲେ ।





# ବୁଦ୍ଧି ଓ ବିବେକ

ଅନେକ ଦିନ ତଳର କଥା । ସୁବୁଦ୍ଧିପୁର ଗାଁରେ ଗୋବିନ୍ଦ ବୋଲି ବୁଦ୍ଧିମାନ୍ ତରୁଣଟିଏ ଥାଏ । କେହି କୌଣସି ସମସ୍ୟାରେ ପଡ଼ିଲେ ତା'ର ପରାମର୍ଶ ନେଇ ସମସ୍ୟାର ସମାଧାନ କରନ୍ତି ।

ତେବେ ଗୋବିନ୍ଦ କିଛି ଉପାର୍ଜନ କରେ ନାହିଁ । ସେ ଅତି ଛୋଟ ଥିଲାବେଳେ ତା' ବାପା ମା ମରିଯାଇଥିଲେ । ବଡ଼ ଭାଇ ତାକୁ ପୋଷୁଥିଲେ । ନିଜେ କେବେ କିଛି ଉପାର୍ଜନ କରିବା କଥା ତା' ମୁଣ୍ଡକୁ ଆସି ନଥିଲା ।

ଦିନେ ତା' ଭାଇ ଭାଉଜ ଅନ୍ୟ କୋଠରୀରେ କଥାବାର୍ତ୍ତା ହେଲାବେଳେ ସେ କଥାବାର୍ତ୍ତା ତା' କାନରେ ପଡ଼ିଲା ।

ଭାଉଜ କହୁଥିଲେ, "ଗୋବିନ୍ଦ କ'ଣ ଏତେ ବୋକା ଯେ ତା' ଦେଇ କିଛି କାମଦାମ ହେବ ନାହିଁ ?"

ବଡ଼ ଭାଇ କହିଲେ, "ବୋକା ? ତା' ଭଳି ବୁଦ୍ଧିମାନ ଏ ଅଞ୍ଚଳରେ ନ ଥିବେ । କାମଦାମ ସେ କରେ ନାହିଁ କାରଣ ମୁଁ ତାକୁ କେବେ କାମ କରିବାକୁ କହିନାହିଁ । ବାପା ମା'ଙ୍କୁ ହରାଇଛି ମୋଟେ ଛଅବର୍ଷ ବୟସରେ । ମୋ ଆଖିରେ ସେ ସେହିଭଳି ପିଲା ହୋଇ ରହିଛି । ସେ କାମ କରିବା ଭଳି ଯୋଗ୍ୟ ହେଲଣି, ଏକଥା ମୋ ମୁଣ୍ଡକୁ ଆସି ନାହିଁ, ତା' ମୁଣ୍ଡକୁ ବା ଆସିବ କିପରି ?"

"ସେ ଯଦି ସତରେ ବୁଦ୍ଧିମାନ, ତେବେ ରାଜଦରବାରକୁ ଯାଇ ନିଜ ବୁଦ୍ଧି ପ୍ରମାଣ କରୁନାହିଁ ?" ଭାଉଜ ପଚାରିଲେ । ଭାଇ ଏହାର କୌଣସି ଉତ୍ତର ଦେଲେ ନାହିଁ ।

ସେତେବେଳେ ପ୍ରତି ବର୍ଷ ରାଜା ନିଜ ରାଜ୍ୟର ତରୁଣମାନଙ୍କ ନିମନ୍ତେ ଗୋଟିଏ ସାଧାରଣ ଜ୍ଞାନ ପ୍ରତିଯୋଗିତାର ବ୍ୟବସ୍ଥା

ପଚିଶବର୍ଷ ତଳର 'ଜହ୍ନମାମୁ'ରୁ ଗୃହୀତ

କରୁଥିଲେ । ପ୍ରତି ଗାଁରୁ ଜଣେ ଜଣେ ଯୁବକ ସେଥିରେ ଯୋଗ ଦେଇ ପାରୁଥିଲେ । ଗ୍ରାମ ସମିତିର ସଭାପତିଙ୍କଠୁଁ ଖଣ୍ଡେ ଚିଠି ନେଇଗଲେ ହେଲା ।

ବାର୍ଷିକ ପ୍ରତିଯୋଗିତା ନିକଟ ହୋଇ ଆସିଥାଏ । ଗୋବିନ୍ଦ ଯାଇ ଗ୍ରାମ ସମିତିର ସଭାପତିଙ୍କୁ କହିବା ମାତ୍ରେ ସେ ଆନନ୍ଦରେ ତା'କୁ ପରିଚୟ ପତ୍ର ଦେଲେ । ଗୋବିନ୍ଦ ଯାଇ ଯଥା ସମୟରେ ଦରବାରରେ ଉପସ୍ଥିତ ହେଲା ।



ରାଜା ପ୍ରତିଯୋଗୀମାନଙ୍କୁ ପ୍ରଶ୍ନ କଲେ : ଆମ ରାଜ୍ୟରେ କେତେଜଣ ସତ୍ୟପରାୟଣ ଲୋକ ଥିବେ ?"

ଜଣେ କହିଲେ, "ଅନ୍ତତଃ ଦଶ ହଜାର ସତ୍ୟପରାୟଣ ବ୍ୟକ୍ତି ଥିବେ ।"

ଆଉ ଜଣେ କହିଲେ, "ଆମକୁ ପ୍ରଥମେ ସାଧୁ ସନ୍ଥ କେତେ ଅଛନ୍ତି, ତା'ର ହିସାବ ନେବାକୁ ହେବ । କାରଣ ସେମାନେହିଁ ସତ୍ୟ ପରାୟଣ ।"

ଗୋବିନ୍ଦ କହିଲା, "ମହାରାଜ ! ଠିକ୍ କେତେ ଅଛନ୍ତି କହି ପାରିବି ନାହିଁ, ତେବେ ଜଣେ ଯୁକ୍ତ ଆଠଜଣ, ଅର୍ଥାତ୍ ନଅଜଣ ନିଶ୍ଚୟ ଅଛନ୍ତି ବୋଲି କହିହେବ ।

ରାଜା ଏହାର ମର୍ମ ବୁଝିଲେ । ସତ୍ୟବାଦୀ ହିସାବରେ ରାଜାଙ୍କର ଖ୍ୟାତି ଥିଲା । ତାଙ୍କର ଥିଲେ ଆଠଜଣ ମୁଖ୍ୟ ପରାମର୍ଶ ଦାତା । ସତ୍ୟବାଦୀ ରାଜା ଯେଉଁମାନଙ୍କୁ ପରାମର୍ଶଦାତା ରୂପେ ମନୋନୀତ କରିଛନ୍ତି, ସେମାନେ ନିଶ୍ଚେ ସତ୍ୟ ପରାୟଣ ହୋଇଥିବେ, ଗୋବିନ୍ଦ ଏହାହିଁ ବୁଝାଉଥିଲା ।

"ଆଚ୍ଛା, ମୋ ମନମୁତାବକ ପୋଷାକ କିପରି ପାଇବି ?" ରାଜା ପଚାରିଲେ ।

"ଆଜ୍ଞା, ବନାରସରେ ମିଳିବ !" ଜଣେ କହିଲେ ।

"ତୁମ୍ଭଙ୍କ ଶ୍ୱଶୁର ଦେଇ ପାରିବେ !" ଆଉ ଜଣେ କହିଲେ ।

ଗୋବିନ୍ଦ କହିଲା, "ବନାରସରେ ମୂଲ୍ୟବାନ ବସ୍ତ୍ର ମିଳେ; ତୁମ୍ଭଙ୍କ ଶ୍ୱଶୁର ବି ମୂଲ୍ୟବାନ ପୋଷାକ ଦେବେ । କିନ୍ତୁ ତୁମ୍ଭଙ୍କ ମନମୁତାବକ

ପୋଷାକ ହୁଜୁର କେବଳ ମାତ୍ର ବରାଦ ଦେଇ ଭଲ ଦରଜୀଠୁଁ କରାଇ ନେଇ ପାରିବେ !"

ରାଜା ଗୋବିନ୍ଦର ଉତ୍ତରରେ ବହୁତ ଖୁସି ହେଲେ । ପ୍ରତିଯୋଗିତାରେ ଭାଗ ନେଇଥିବା ସମସ୍ତଙ୍କୁ ଖଣ୍ଡିଏ ଖଣ୍ଡିଏ ମୂଲ୍ୟବାନ ଚଦର ଓ ସୁନା ମୋହର ମିଳିଲା । ରାତିରେ ସମସ୍ତଙ୍କୁ ଗୋଟିଏ ଭୋଜିକୁ ନିମନ୍ତ୍ରଣ କରାଗଲା ।

ସମସ୍ତେ ସେ ଚଦରମାନ ଘୋଡ଼ି ହୋଇ ଆସିଥାନ୍ତି ଓ ଭୋଜିରେ ପରଶା ଯାଇଥିବା ଭଲ ଭଲ ଚିଜ ଖାଉଥାନ୍ତି । ଗୋବିନ୍ଦ କିନ୍ତୁ ଚଦର ନ ଆଣି ଆସିଥାଏ । ଖାଇବା ବେଳେ ବି ଖାଲି ଭାତ ଡାଲି ଛଡ଼ା ସେ ଆଉ କିଛି ଖାଇଲା ନାହିଁ । ରାଜାଙ୍କର ଜଣେ ମନ୍ତ୍ରୀ ଏହା ଲକ୍ଷ୍ୟ କରି ରାଜାଙ୍କୁ କହିଲେ । ରାଜା ଗୋବିନ୍ଦକୁ ଡକାଇ ପଚାରିଲେ, "ତମେ ମୋର ଉପହାର ଚଦର ବ୍ୟବହାର କରୁନାହଁ କାହିଁକି ?"

"ହୁଜୁର ! ଆପଣ ଯେତେବେଳେ ପଚାରୁଛନ୍ତି, ମୋତେ ସତ କହିବାକୁ ପଡ଼ିବ । ଚଦରର ମର୍ଯ୍ୟାଦା ସହ ମୋର ଧୋତି ଓ ଅନ୍ୟାନ୍ୟ ପୋଷାକ ମୂଲ୍ୟବାନ ହେବା ଦରକାର । ସେଭଳି ପୋଷାକ ପାଇବି କାହୁଁ ? ତେଣୁ ଚଦରଟି ମୁଁ ରାଜ ପୁରୋହିତଙ୍କୁ ଭେଟି ଦେଇଛି । ଅପାତ୍ରରେ ଦେଇ ନାହିଁ ।" ଗୋବିନ୍ଦ କହିଲା ।

"ତମେ ଭାତ ଡାଲି ଛଡ଼ା ଆଉ କିଛି ନ ଖାଇବାର କାରଣ ?"

"ହୁଜୁର ! ଥରେ ସିନା ସେସବୁ ଖାଇବି, ତାପରେ ତ ତାକୁ ଝୁରି ହେଉଥିବି ! ତେଣୁ ଯେଉଁ ଜିନିଷ ଜୀବନସାରା ପାଇବି, ତାହାକୁହିଁ ଖାଇଲି ।"

"ସୁନା ମୋହର କ'ଣ କଲ ?"

"ହୁଜୁର ! ସେ ଗୋଟିକ ରଖିଛି । ମୋ ବଡ଼ଭାଇ ଦେବୋପମ ଲୋକ । ମୋତେ ପାଳି ପୋଷି ବଡ଼ କରିଛନ୍ତି । ତାହା ତାଙ୍କୁ ଦେବି ।"

ଗୋବିନ୍ଦର ଉତ୍ତରରେ ରାଜା ବହୁତ ଖୁସି ହେଲେ ଓ ତାକୁ ଦରବାରରେ ଉପଯୁକ୍ତ ଚାକିରିଟିଏ ଦେଲେ ।



# ଆମେରିକାର ରାକୁନ୍

ଉତ୍ତର ଆମେରିକାରେ ଥିବା ରାକୁନ୍ ନାମକ ଜନ୍ତୁଙ୍କର ଆହାର ଅନ୍ୱେଷଣ କରିବାର ରୀତି ବଡ଼ କୌତୁହଳ ପ୍ରଦ । ଏମାନେ ଭଲ୍ଲୁ ଜାତୀୟ ଛୋଟ ଜୀବ । ଏମାନେ ଛୋଟ ଛୋଟ ପକ୍ଷୀ, ସେମାନଙ୍କ ଡିମ୍ବ ବା ଛୋଟ ଜନ୍ତୁ ସବୁ ଧରି ଖା'ନ୍ତି । ଏମାନେ ଏତେ ସତର୍କ ଯେ ବିପଦ ପଡ଼ିବା ମାତ୍ରେ ବିଜୁଳି ବେଗରେ ସେଠାରୁ ଚାଲିଯାନ୍ତି ।

ଏମାନଙ୍କ ପାଦ ଅତ୍ୟନ୍ତ ପତଳା ଓ ଆଙ୍ଗୁଳିମାନଙ୍କ ମଧ୍ୟରେ ଚର୍ମ ନ ଥାଏ । ତଥାପି ମଧ୍ୟ ପାଣିରେ ଏମାନେ ସୁନ୍ଦର ଭାବରେ ପହଁରି ପାରନ୍ତି । ବେଳେ ବେଳେ ନଦୀରେ ବୁଡ଼ ମାରି ମୁହଁରେ ମାଛ ଧରି ବାହାରି ଆସନ୍ତି । ଯାହା କିଛି ଖା'ନ୍ତି ତାହା ପାଣିରେ ନ ଧୋଇ କେବେ ସେମାନେ ଖାଆନ୍ତି ନାହିଁ । ଲାଞ୍ଜ ସହିତ ଏମାନଙ୍କର ଲମ୍ବା ଏକ ମିଟର ହୋଇଥାଏ । ଏମାନଙ୍କ ଚର୍ମ ପୋଷାକ ପ୍ରସ୍ତୁତ କରିବାରେ ମଧ୍ୟ ଆବଶ୍ୟକ ହୁଏ । ବହୁ ପୂର୍ବେ ମୁଦ୍ରା ଭାବରେ ରାକୁନ୍ ଚମଡ଼ାର ବିନିମୟ ପ୍ରଚଳିତ ଥିଲା ।

ଗଛ କୋରଡ଼ରେ ବା ଜମିରେ ଗାତ କରି ଏମାନେ ରହନ୍ତି । ସେମାନେ ଶରତ ଋତୁର ଆରମ୍ଭରେ ଭଲ ସ୍ଥାନ ଖୋଜି ଶୀତକାଳ ପାଇଁ ଘର ବନାଇ ରହନ୍ତି । ସେତେବେଳେ ସେମାନେ ଶିକାର ନ ଖୋଜି ବେଶି ସମୟ ଗଭୀର ନିଦ୍ରାରେ ବିତାଇ ଦିଅନ୍ତି । ଶୀତ ପରେ ବସନ୍ତ ଆସିଲେ ଦେହରେ ଟିକିଏ ଉଷୁମ ପବନ ଲାଗିଲେ ଏମାନେ ନିଦରୁ ଉଠନ୍ତି ।



ଦାନ୍ତକଣା ର
ମୁକାବିଲା
ସୁପର
ଫାଇଟର
ହିଁ କରିପାରେ!






















ଆଉ ଫୋରହ୍ୟାନ୍ସ ଫ୍ଲୋରାଇଡ
ମଧ୍ୟ ଆପଣଙ୍କୁ ଦିଏ ସେହି ବିଖ୍ୟାତ
ଫୋରହ୍ୟାନ୍ସ ର ଯତ୍ନ !




ଫୋରହ୍ୟାନ୍ସ ଫ୍ଲୋରାଇଡ - ମାଢ଼ିକୁ ସଂକୁଚିତ କରେ, ଦାନ୍ତକଣା ରୋଧ କରେ

404-GM-183 OR

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ମାର୍ଚ୍ଚ ୧୯୮୬ ସଂଖ୍ୟାରେ ପ୍ରକାଶ ପାଇବ



Mrs. V Rajamani



Pranlal K. Patel

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃଇ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜାନୁଆରି ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

## ନଭେମ୍ବର, ୮୫ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : କାଠ ଘୋଡ଼ା ଯିବ ଗୃଇ ପାରିବ,
ଦ୍ୱିତୀୟ ଚିତ୍ର : ମୋ ଖେଳଣା କିଆଁ ଉଡି ନ ଯିବ ?
ପୁରସ୍କାର ବିଜୟୀ : ରଶ୍ମିରଞ୍ଜନ ରାଉତ, ଆମ୍ବ, କେଉଁଝର।
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳାର ଉତ୍ତର

୧. ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ। ୨. 'ସାବିତ୍ରୀ'। ଶ୍ରୀଅରବିନ୍ଦ। ୩. ଉଦୟଶଙ୍କର ଓ ରବିଶଙ୍କର। ୪. ହଁ। ଦୁଇ ଭାଇ। ୫. ଓସ୍ତାଦ୍ ବିସମିଲ୍ଲା ଖାଁ।

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.

# ଜହ୍ନମାମୁଁ

ଆଲୋକ ଓ ଆନନ୍ଦର ମାସିକ ପତ୍ରିକା



* ଭାରତର ପ୍ରାଚୀନ କାହାଣୀମାଳା ସହିତ ନୂତନ କାହାଣୀମାଳାର ଅପୂର୍ବ ସମନ୍ୱୟ ।
* ସରଳ ଓ ସଂଯତ ଭାଷାର ପ୍ରକୃଷ୍ଟ ଉଦାହରଣ—ଜହ୍ନମାମୁଁ ।
* ହାସ୍ୟରସ ସହ ମାନବିକତା ଓ ନୀତିଶିକ୍ଷାରେ ସମୃଦ୍ଧ ପତ୍ରିକା—ଜହ୍ନମାମୁଁ ।
* ଜହ୍ନମାମୁଁ କେବଳ ଶିଶୁ ବା କିଶୋରମାନଙ୍କ ପତ୍ରିକା ନୁହେଁ, ପରିବାରର ସମସ୍ତେ ଏହା ଉପଭୋଗ କରନ୍ତି ।
* ସାଧାରଣଜ୍ଞାନର ଭଣ୍ଡାର—ଜହ୍ନମାମୁଁ ।
* ଇଂରାଜୀ ଓ ସଂସ୍କୃତ ସମେତ ତେରଗୋଟି ଭାଷାରେ ପ୍ରକାଶିତ ଏ ପତ୍ରିକା ଭାରତର ଏକତାର ପ୍ରତୀକ ।

'ଜହ୍ନମାମୁଁ' ପଢ଼ନ୍ତୁ ଓ ପଢ଼ାନ୍ତୁ ।

ବାର୍ଷିକ ଦେୟ : ଟ ୩୦-୦୦



'ଜହ୍ନମାମୁଁ'ର ଗ୍ରାହକ ହେବା ନିମନ୍ତେ ଆପଣଙ୍କ ପୁରା ଠିକଣା ସହ ମନିଅର୍ଡର ତଳ ଠିକଣାକୁ ପଠାନ୍ତୁ :

## ଡଲ୍‌ଟନ୍ ଏଜେନ୍‌ସିଜ୍

ଚନ୍ଦାମାମା ବିଲ୍‌ଡ଼ିଙ୍ଗ୍‌ସ୍,

ବଡପଲନୀ, ମାଡ୍ରାସ-୬୦୦୦୨୬